# ପୃଥିବୀର ଲୋକକଥା

( ପଞ୍ଜାବ )

( ଦ୍ୱିତୀୟ ଭାଗ )

ଶ୍ରୀ ଲକ୍ଷ୍ମୀଧର ମହାନ୍ତି, ବି. ଏସ୍. ସି., ଏଲ୍ ଏଲ୍. ବି.,
ଓ. ଏସ୍. ଜେ. ଏସ୍ (ଅବସରପ୍ରାପ୍ତ)

ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି, ଏମ୍. ଏ., ବି. ଇଡ୍.

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

# ପୃଥିବୀର ଲୋକକଥା

## ପଞ୍ଜାବ

ତୃତୀୟ ଖଣ୍ଡ



ପ୍ରକାଶକ :
ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ
ବଜ୍ରକବାଟି ରୋଡ୍, କଟକ-୧

ପ୍ରଥମ ପ୍ରକାଶ :
ପ୍ରଥମାଷ୍ଟମୀ, ୧୯୮୭

ଦ୍ୱିତୀୟ ପ୍ରକାଶ:
ଅଗଷ୍ଟ ପନ୍ଦର, ୨୦୦୨

ପ୍ରଚ୍ଛଦପଟ—ଶ୍ରୀ ରବିନାରାୟଣ ନାୟକ

ମୁଦ୍ରାକର :
ନାରାୟଣ ପ୍ରିଣ୍ଟର୍ସ
କନକା ଛକ, କଟକ-୮

ମୂଲ୍ୟ—୧୨ ଟଙ୍କା ମାତ୍ର

# ନିବେଦନ

ଆମର ଶିକ୍ଷା ତ୍ରୁଟିପୂର୍ଣ୍ଣ । ଲୋକଙ୍କ ନୈତିକତାର ମାନ କମିଆସୁଛି । ଆମକୁ ଲୋକଚରିତ୍ର ସୁଧାରିବାକୁ ହେବ । ନଚେତ୍ ମଣିଷ ସମାଜ ଧ୍ୱଂସ ପାଇଯିବ ।

ଲୋକକଥା ଅଭିଜ୍ଞ ଲୋକଙ୍କର ଅନୁଭୂତିର କଥା । ସୁନାକୁ ଯେପରି ମାଟି ଖାଇପାରେ ନାହିଁ, ସମୟ ମଧ୍ୟ ଲୋକକଥାକୁ ଧ୍ୱଂସ କରିନାହିଁ । ପୃଥିବୀର ଲୋକକଥା ଯେ ଜାଣିବ, ସେ ବିଜ୍ଞ ହୋଇଯିବ । ସମସ୍ୟାର ସମ୍ମୁଖୀନ ହେବାକୁ ପଛେଇବ ନାହିଁ ।

ପୃଥିବୀର ଲୋକକଥା ଅଳ୍ପ କିଛି ଓଡ଼ିଆ ଭାଷାରେ ପ୍ରକାଶ ପାଇଛି । ଆମର ସଂଗୃହୀତ ଗଳ୍ପ ସଂଖ୍ୟା ପ୍ରାୟ ୭୦୦୦ । ସେ ସବୁ ଧାରାବାହିକ ଭାବେ ପ୍ରକାଶ ଆମେ କରିବାକୁ ଉଦ୍ୟମ କରୁଛୁ । ଛୋଟ ଛୋଟ ବହି ମାଧ୍ୟମରେ । ଏ ପର୍ଯ୍ୟନ୍ତ ୫୨ଟି ବହି ପ୍ରକାଶ ପାଇଲାଣି ।

ସାଧାରଣ ଲୋକ ଆମର ଗରିବ । ଏହି ଛୋଟ ଛୋଟ ବହି କିଣି ଯେ ଏକାଠିକରି ପାରିବ, ସେ ସମୁଦାୟ ଲୋକକଥା ସେଟ୍‌ଟି ପାଇଯିବ, ବାଧିବ ନାହିଁ ।

ସବୁ ଲୋକକଥା ଆମପକ୍ଷେ ସଂଗ୍ରହ କରିବା ସମ୍ଭବ ନୁହେଁ । ଯେ କୌଣସି ବଦାନ୍ୟ ବ୍ୟକ୍ତି ଆମକୁ ଏ ଦିଗରେ ସାହାଯ୍ୟ କଲେ ଆମେ ତାଙ୍କ ଠାରେ ଋଣୀ ହେବୁ ।

ଏ ଦିଗରେ ଆପଣଙ୍କର ସଦିଚ୍ଛା, ସହାନୁଭୂତି ଆଉ ସାହାଯ୍ୟ ଆମେ କାମନା କରୁଛୁ ।

ଲକ୍ଷ୍ମୀଧର ମହାନ୍ତି
ଅନ୍ନପୂର୍ଣ୍ଣା ମହାନ୍ତି

—※—

# ସୂଚୀପତ୍ର

# ରଜା ଓ ମାଈ ଶୁଆ

ଆଗେ ପକ୍ଷୀମାନେ କଥା କହିପାରୁଥିଲେ, ଠିକ୍ ମଣିଷ ଭଳିଆ। କେବଳ ସେତିକି ନୁହେଁ, ସେମାନଙ୍କ ମଧ୍ୟରୁ ଅନେକ ଥିଲେ ବହୁଦର୍ଶୀ ଓ ଜ୍ଞାନୀ। ଜଣେ ରଜା ସେମିତି ପକ୍ଷୀଟିଏ ପାଳିଥିଲେ। ସେଇଟି ମାଈ ଶୁଆ। ତାକୁ ସେ ପିଞ୍ଜରାରେ ରଖି-ଥାଆନ୍ତି। ତା ପ୍ରତି ଶ୍ରଦ୍ଧା ତାଙ୍କର ବହୁତ। ଅସୀମ ସ୍ନେହ। ସକାଳେ ସନ୍ଧ୍ୟାରେ ରଜା ତା ସାଥିରେ ଗପ କରନ୍ତି। କୋଳରେ ବସାଇ ତାକୁ ମିଠା ରୁଟି ଖୁଆନ୍ତି। ଶୁଆଟି ରଜାଙ୍କ ପ୍ରତି ବିଶେଷ ଅନୁରକ୍ତ। ତାଙ୍କୁ ସେ କେବେହେଲେ କାମୁଡ଼େ ନାହିଁ। ତାର ନାଲି ଥଣ୍ଟକୁ ସେ ରଜାଙ୍କ ଗାଲରେ ଘଷେ। କାନ୍ଧରେ ବସି ଡେଣାକୁ ଫଡ ଫଡ଼ କରେ। କଥା କହି ରଜାଙ୍କ ମନ ମୋହେ। ଦରକାରବେଳେ ରଜାଙ୍କୁ ପରାମର୍ଶ ମଧ୍ୟ ଦିଏ।

ଏମିତି ଭାବରେ କିଛି ଦିନ ଚାଲିଗଲା। ଏହା ଭିତରେ ବସନ୍ତ ଆସିଗଲାଣି। ସବୁ ଗଛରେ କିଶଳୟର ସମ୍ଭାର। ସମସ୍ତ ଜୀବଜଗତ ଉଚ୍ଛନ୍ନ। ମନରେ ସମସ୍ତଙ୍କର ନୂତନ ସ୍ପନ୍ଦନ। ଦେହରେ ଶିହରଣ। ଉନ୍ମାଦନା। ଶୁଆଟି ସେଥିରୁ ମୁକ୍ତ ନୁହେଁ। ସେ ଚଞ୍ଚଳ। ମନ ତାର ଛନ ଛନ। ତାର ମାଈକୁ ଫେରିବାକୁ ସେ ଉଦ୍‌ବିଗ୍ନ। ମନ ଉଚ୍ଚାଟ ହେଲେ ସବୁ କଥା ବିଷଭଳି ଲାଗେ। ଯାହା ମନ ଲୋଡ଼େ, ତା କରିବାକୁ ଖାଲି ଇଚ୍ଛା ହୁଏ। ଶୁଆଟିର ମନ ଅସମ୍ଭାଳ। ଯେତେ ଚେଷ୍ଟା କଲେ ବି ମନକଥା ସେ ଲୁଚାଇ ପାରିଲା ନାହିଁ। ଦିନେ ସେ ରଜାଙ୍କୁ କହିଲା—"ମହାରାଜ ! ମୁଁ

ବହୁଦିନ ହେଲା ମାଡ଼ି ଗୁଡ଼ ଆସିଲଣି । ଘର କଥା ମନେପଡ଼ୁଛି । ଅନୁମତି ମିଳିଲେ ଟିକିଏ ବସା ଆଡ଼େ ବୁଲି ଆସନ୍ତି ।"

ଶୁଆଟି ରଜାଙ୍କର ଅତି ପ୍ରିୟ । ବିଶ୍ୱସ୍ତ ବି । ତାକୁ ଛାଡ଼ିବାକୁ ରଜା ଏକାନ୍ତ ଅନିଚ୍ଛୁକ । ସିଧା ମନା କରି ଶୁଆଟିର ମନରେ କଷ୍ଟ ଦେବାକୁ ବି ରଜା ଚାହାନ୍ତି ନାହିଁ । ତେଣୁ ସେ ଉତ୍ତର ନ ଦେଇ କଥାଟାକୁ ବାଆଁ ରେଇ ଦେଲେ ।

ଶୁଆଟି ଜିଦ୍‌ଖୋର । ସେଇଟା ହେବା ତା ପକ୍ଷେ ସ୍ୱାଭାବିକ । ରଜାଙ୍କର ବାହୁ ଛତ୍ରଛାୟାତଳେ ସେ ବଢ଼ିଛି । ସେ ଦେଖିଛି, କଥା ତାର ତଳେ ପଡ଼େ ନାହିଁ । ବରଂ ତା କଥା ମାନିବାକୁ ସମସ୍ତେ ଆଗ୍ରହୀ । ବେଳେ ବେଳେ ବ୍ୟାକୁଳ ବି । 'ନାହିଁ' ଶୁଣିବାରେ ସେ ଅନଭ୍ୟସ୍ତ । ତେଣୁ ରଜାଙ୍କର ମତି ଗତି ତାକୁ ବେଶ୍ ବାଧିଲା । ସେ ବି ଛାଡ଼ିବାର ଜନ୍ତୁ ନୁହେଁ । ବାରମ୍ବାର ସେ ରଜାଙ୍କୁ ତାର ଅନୁରୋଧ ଜଣାଇଲା । ତାର ଗୋଟିଏ ଅନୁନୟ— ସେ ଟିକିଏ ଯାଇ ତା ବସାଆଡ଼େ ବୁଲି ଆସିବ ।

ରଜା ଦେଖିଲେ ମନା କରି ଲାଭ ନାହିଁ । ବରଂ ଶୁଆଟି ଅସନ୍ତୁଷ୍ଟ ହେବ । ଅସନ୍ତୋଷ ଉତ୍କଟ ହେଲେ ଉଦ୍‌ଭଟ ଘଟେ । ବାଧ୍ୟହୋଇ ଶେଷକୁ ରଜା ରାଜି ହେଲେ । କିନ୍ତୁ ଗୋଟିଏ ସର୍ତ୍ତରେ —ଶୁଆଟି ଛ'ମାସ ଭିତରେ ଫେରି ଆସିବ । ଆଉ ଆସିଲାବେଳେ ଉପହାରଟିଏ ଆଣିବ । ତାଙ୍କୁ ଭଲ ପାଉଥିବାର ଏଇ ହେବ ତାର ନିଦର୍ଶନ ।

ଶୁଆଟି କହିଲା—"ମହାରାଜ ! ଆପଣଙ୍କୁ ମୁଁ ଅନ୍ତରର ସହିତ ଭଲପାଏ । ସବୁବେଳେ ଆପଣଙ୍କ କଥା ମୋର ମନେ ପଡ଼ିବ । ଏଠା ସେଠା ମୋ ପକ୍ଷେ ସମାନ । ମୋତେ ଛ' ମାସ ବହୁତ ବାଧିବ । ମୁଁ ତା ଆଗରୁ ଯଦି ହେବ ପଳାଇ ଆସିବ ।"

ରାଜା ପିଞ୍ଜରାଟିର କବାଟ ଖୋଲିଦେଲେ । ଶୁଆଟି ମହା-ଆନନ୍ଦ । ସେ ପହଁରିକୁ ଆସି ରାଜାଙ୍କ କାନ୍ଧରେ ବସିଲା । ତା ସୁନ୍ଦରିଆ ନାଲି ଥଣ୍ଟକୁ ରାଜାଙ୍କ ଗାଲରେ ଘଷିଲା । ରାଜା ତାକୁ ସ୍ନେହରେ ଆଉଁସି ଦେଲେ । ତା ପରେ ତାର ସୁନ୍ଦର ସବୁଜ ଡେଣା ଦୁଇଟି ହଲାଇ ହଲାଇ ସେ ଉଡ଼ି ଚାଲିଗଲା ।

ଶୁଆଟି ରାଜପ୍ରାସାଦରେ ଥିଲା । ଏଠି ଅଭାବ କିଛି ନାହିଁ । ଏବେ ସେ ବଣକୁ ଯିବ । ସେଠି ଯତ୍ନ ନେବାକୁ କେହି ନାହିଁ । ସଞ୍ଚିତ କିଛି ନ ଥାଏ । ତେଣୁ ଅଭାବ ସେଠି ଲାଗି ରହିବ । ତା'ଛଡ଼ା ଜୀବନ ସେଠି ନିରାପଦ ନୁହେଁ । ତଥାପି ବଣକୁ ଯିବାକୁ ସେ ତତ୍ପର । କାରଣ ନିଶ୍ଚୟ ଥିବ । ତାହା ଜାଣିବାକୁ ରାଜା ଆଗ୍ରହୀ । ସେଥିପାଇଁ ଶୁଆଟି ବିଷୟରେ ଠିକଣାଖି ଖବର ତାଙ୍କୁ ଜଣାଇବାକୁ ଗୁପ୍ତଚରଙ୍କୁ ତାଙ୍କର ଆଦେଶ ।

ଶୁଆଟି ବର୍ତ୍ତମାନ ମୁକ୍ତ । ମନରେ ତାର ଅକଳନ ଆନନ୍ଦ । ଦେହରେ ନୂତନ ସ୍ଫୂର୍ତ୍ତି । ସେ ଗଗନରେ ଉଡ଼ି ଉଡ଼ି ଯାଉଥାଏ । କେତେ ପାହାଡ଼, କେତେ ବଣ, କେତେ ନଈ, କେତେ ନାଳ ସେ ସେ ପାରି ହୋଇ ଚାଲିଯାଉଥାଏ, ସେଥି ପ୍ରତି ତାର ନିଘା ନାହିଁ । ଅଥଚ ତଳେ ତାର ଅନୁସରଣ କରୁଥାନ୍ତି ଦଳେ ଅଶ୍ୱାରୋହୀ । ସେମାନଙ୍କର ମନ ଆନନ୍ଦ ବିମୁଖ । ଯାହା ମାଦକତା ଶୂନ୍ୟ । ସେମାନେ କର୍ତ୍ତବ୍ୟରତ । ଶୁଆଟିର ଗନ୍ତବ୍ୟ ନିର୍ଣ୍ଣୟ ସେମାନଙ୍କର କାର୍ଯ୍ୟ ।

ଏହା ଭିତରେ ସେମାନେ ଶହେକୋଶ ବାଟ ଚାଲିଆସିଲେଣି । ପଥଶ୍ରମରେ ସେମାନେ କ୍ଳାନ୍ତ ଓ ଅବସନ୍ନ । ତଥାପି ବିଶ୍ରାମ ନେବାକୁ ସେମାନଙ୍କର ଅବକାଶ ନାହିଁ । ହେଲା କଲେ, ଶୁଆଟିର ଗନ୍ତବ୍ୟ ଜାଣି ହେବ ନାହିଁ । ଫଳରେ ତାଙ୍କର ହେଲା ବୁଡ଼ିଯିବ ।

ଏଇ ଭୟ ଆଉ ଭ୍ରାନ୍ତ ତାଙ୍କୁ ଏତେ ଦୂର ଅତିକ୍ରମ କରିବାକୁ ସାହାଯ୍ୟ କରିଛି ।

ଶେଷରେ ସେମାନେ ଏକ ଅପନ୍ତରା ଆଉ ଟାଙ୍ଗରା ଅଞ୍ଚଳରେ ପହଞ୍ଚିଗଲେ । ତାହା ସୀମାହୀନ । ଦିଗନ୍ତ ବ୍ୟାପୀ । ସେଠି ବୃକ୍ଷ ତ ଦୂରର କଥା, ଘାସ ଟିକଏ ବି ଜନ୍ମେ ନାହିଁ । ପବନର ଗତି ସେଠି ପ୍ରବଳ । ବର୍ଷଯାଏ ବତାସ ପିଟେ । ତାର ସୁ ସୁ ଗର୍ଜନରେ କାନ ଅତଡ଼ା ପଡ଼େ । ନଈଟିଏ ସେଠି ବହି ଯାଉଛି । କୂଳ ତାର ଖାଖ । ତାହା ଅତ୍ୟନ୍ତ ଗଭୀର । ସୁଅ ପ୍ରବଳ । ସାପ ମୁଣ୍ଡ ଦିଖଣ୍ଡ ହେବ । ଆରପଟକୁ ଯିବାକୁ ଉପାୟ ନାହିଁ ।

ଶୁଆଟି ସେ ପର୍ଯ୍ୟନ୍ତ ସେମାନଙ୍କ ନଜରରେ ଥିଲା । ସେମାନେ ଦେଖିଛନ୍ତି—ସେ ନଈ ପାର ହୋଇନାହିଁ । ଅଥଚ ସେଇଠୁ କୁଆଡେ ଉଭେଇଗଲା । ସେମାନେ ଯେତେ ଲକ୍ଷ୍ୟକଲେ, ଶୁଆଟିକୁ କେଉଁଠି ଦେଖିଲେ ନାହିଁ । ଚାରିଆଡ଼େ ସମତଳ ଅଞ୍ଚଳ । ଶୁଆ ଯାଇଥିଲେ ତ' ଜଣା ପଡ଼ନ୍ତା । ସେମାନେ ବହୁତ ଆଲୋଚନା କଲେ । କୌଣସି ସିଦ୍ଧାନ୍ତରେ ଉପନୀତ ହୋଇ ପାରିଲେ ନାହିଁ । ଏଥିର ବ୍ୟତିବ୍ୟସ୍ତ ସେମାନେ ।

ରାଜ-କର୍ମଚାରୀ ସେମାନେ । ଆଦେଶ ପାଳନ ତାଙ୍କର କର୍ତ୍ତବ୍ୟ । ବ୍ୟତିକ୍ରମ ତାଙ୍କର ଅପାରଗତା । ଦଣ୍ଡଯୋଗ୍ୟ । ସେ ଦଣ୍ଡରେ ମାନବିକତା ନାହିଁ । ଆଦେଶ ସମୀଚୀନତା ବିଚାରକୁ ଆସେ ନାହିଁ । ନ୍ୟାୟ ନାଁରେ ଅନ୍ୟାୟ ହୁଏ । ମାନବିକତାର ହାନି ଆଉ ଆଳ ନେଇ ଅତ୍ୟାଚାର ହୁଏ । ପ୍ରତିବାଦ ଅସମ୍ଭବ । ତୋଷାମୋଦ ସ୍ୱାଗତ ଯୋଗ୍ୟ । ଏ ସବୁଥିରେ ସେମାନେ ଅଭ୍ୟସ୍ତ । ତେଣୁ ଶୁଆର ସନ୍ଧାନ ନ ମିଳିବାରୁ ସେମାନେ ବ୍ୟଥିତ । ଉଦ୍‌ବିଗ୍ନ ।

ଅନତି ଦୂରରେ ଚୋଟାଟିଏ । ସେଠାକୁ ଶୁଆଟି ଯାଇଥିବାର ସମ୍ଭାବନା ଅଧିକ । ତେଣୁ ଘୋଡ଼ାକୁ ସେମାନେ ସେଇଠାକୁ ଛୁଟାଇ ଦେଲେ । ସେଠି ପହଞ୍ଚି ଚୋଟାଟି ଦେଖିଲେ । ତାହା ନଈର ଏଇପାଖରେ । ଚୋଟାର ଏମୁଣ୍ଡ ଗଛଟି ଖୁବ୍ ବଡ଼ । ଅତ୍ୟଧିକ ଉଚ୍ଚ । ଅଗରେ ତାର ବସାଟିଏ । ସେଠି ବସିଛି ରାଜାଙ୍କର ପ୍ରିୟ ଶୁଆ । ସେମାନେ ଏଥର ଆଶ୍ୱସ୍ତ ।

ପବନରେ ଗଛଟି ଖୁବ୍ ଜୋରରେ ନଇଁ ଆସୁଥାଏ । ନଈ ଆଡ଼କୁ । ଯେଉଁ ଅଗରେ ଶୁଆର ବସା, ତାହା ଅବସ୍ଥା ଅତ୍ୟନ୍ତ ଶୋଚମାୟ । ସେଇଟି ଏମିତି ନଇଁ ଯାଉଥାଏ ଯେ ଆଶଙ୍କା ହୁଏ— ଡାଳଟି ଭାଙ୍ଗିଯିବ । ନଈରେ ଯେଉଁଠି ପ୍ରଖର ସ୍ରୋତ, ସେଇଠି ପଡ଼ିବ । ସେଥିରେ ଡାଳ, ଶୁଆ ଆଉ ବସା ଭାସିଯିବେ । ଚିହ୍ନ ବର୍ତ୍ତି କିଛି ରହିବ ନାହିଁ ।

ଅନୁଚର ବର୍ଗଙ୍କ ମନରେ ଘୋର ଆଶଙ୍କା । ଏହାର ଦୂରୀଭୂତ ପାଇଁ ସେମାନେ ଶୁଆଟିକୁ ଉଥାସକୁ ଫେରି ଯିବାକୁ ପ୍ରବର୍ତ୍ତାଇଲେ । କିନ୍ତୁ ଶୁଆଟି ନିରୁତ୍ତର । ଆଖି ଦୁଇଟି ସ୍ଥିର । ଗମ୍ଭୀର । ସେମାନେ ଅନୁଭବ କଲେ, ଶୁଆଟିର ତାଙ୍କ କଥା ଶୁଣିବାରେ ଆଗ୍ରହ ନାହିଁ । ସେମାନେ ବିଶ୍ୱାସ କଲେ ଯେ ସେଇଠି ରହିବାକୁ ଶୁଆଟିର ଇଚ୍ଛା । ତାର ମନ ପରିବର୍ତ୍ତନ ପାଇଁ ସେଠି କିଛିଦିନ ସେମାନେ ଅପେକ୍ଷା କଲେ । ସେମାନେ ଦେଖିଲେ ଯେ ସେଠା ଛାଡ଼ି ଶୁଆ ଆଉ କୁଆଡ଼େ ଯାଉ ନାହିଁ । ଆଉ ଅପେକ୍ଷା ନ କରି ସେମାନେ ଫେରି ଆସିଲେ ।

ଅନୁଚର ବର୍ଗଙ୍କଠାରୁ ସମସ୍ତ ଘଟଣା ରାଜା ଶୁଣିଲେ । ରାଜା ଭାବିଲେ — ଶୁଆଟି ଦେଖିବାକୁ ସୁନ୍ଦର । ବାକ୍‌ପଟୁ । କଥା

ତା'ର ମଧୁର । ମନୋମୁଗ୍ଧକର । ପାଣ୍ଡିତ୍ୟ ପୂର୍ଣ୍ଣ । ଯୁକ୍ତିଯୁକ୍ତ । ଅଥଚ ସେ ରାଜା ଉଆସରେ ରହୁନି ନାହିଁ । ଅପରିଚିତ ଜାଗାରେ ରହୁଛି । ସେଠି ବଡ଼ ତାସ ବଢ଼େ । କୁଆ କୋଇଲି ବି ଦେଖିବାକୁ ମିଳନ୍ତି ନାହିଁ । ଖାଦ୍ୟ ସଂଗ୍ରହ ଦୁରୂହ । ରାଜାର ଅନୁଧ୍ୟାନ ପରେ ମଧ୍ୟ, ଶୁଆଟି ଏପରି ଜାଗାରେ ଘରକରଣାର ଯଥାର୍ଥତା ସେ ବୁଝିପାରିଲେ ନାହିଁ । ମନ୍ତ୍ରୀପରିଷଦଙ୍କୁ ପଚାରିଲେ । କେହି ମନ-ମୁତାବକ ଉତ୍ତରଟିଏ ଦେଲେ ନାହିଁ । ରାଜା ତେଣୁ ବ୍ୟଥିତ ଓ ବିବ୍ରତ ।

ସମସ୍ତ ଭଲଗୁଣ—ସେ କାହାକୁ ଅପେକ୍ଷା କରେ ନାହିଁ । ସବୁ ଦୁଃଖ ଧୀରେ ଧୀରେ ପୋଛିଦିଏ । ସୁସ୍ଥ କରୁ ଅବସ୍ଥା ଉତ୍ତ କରାଏ ।

ଏହା ଭିତରେ ବର୍ଷଟିଏ ବିତିଗଲାଣି । ଶୁଆ କଥା ଲୋକ-ଙ୍କର ମନେ ବି ନାହିଁ । କିନ୍ତୁ ଶୁଆକଥା ରାଜାଙ୍କର କେବେ କେବେ ମନେ ପଡ଼େ । ମନଟା ଗୋଳେଇ ଘାଣ୍ଟି ହୁଏ । ତାହା ପୁଣି ମୁହୂର୍ତ୍ତକ ପାଇଁ । ପୁଣି ତାଙ୍କ କାମରେ ସେ ଲାଗି ଯାଆନ୍ତି ।

ଏହା ଭିତରେ ଶୁଆଟି ଅଣ୍ଡା ଦେଇଛି । ସେ ସବୁକୁ ଯତ୍ନରେ ଉଷୁମ କରି ଛୁଆ ଫୁଟେଇଛି । ସେଥିରୁ ଗୋଟିଏ ବି ନଷ୍ଟ ହୋଇ-ନାହିଁ । ଛୁଆଙ୍କର ତତ୍ତ୍ୱ ସେ ଖୁବ୍ ନେଇଛି । ସେମାନେ ପାଳିଗଲେଣି । ଏବେ ସେମାନେ ଆତ୍ମ ନିର୍ଭରଶୀଳ । ତାଙ୍କ ପାଇଁ କିଛି କରିବାର ଆଉ ନାହିଁ । ସେ ଏଥର ନିଶ୍ଚିନ୍ତ ।

ଏବେ ତା' ହାତରେ ବହୁତ ସମୟ । କାମ କମ ନାହିଁ । ସେ ପଛ କଥା ଭାବେ । ରାଜାଙ୍କ ସ୍ନେହ, ଶ୍ରଦ୍ଧା କଥା ମନେପଡ଼ିଲେ, ତା'ର ମନ ମରିଯାଏ । ସେ ଛ ମାସ ସମସ୍ତ ନେଇ ଆସିଥିଲା ।

ଏହା ଭିତରେ ବର୍ଷଟିଏ ବିତିଗଲା । ସେ ଯାଇନାହାଁନ୍ତି । ରାଜାଙ୍କ ଖବର ବି କିଛି ରଖିନାହାଁନ୍ତି । ରାଜାଙ୍କ କଥା ମନକୁ ଆସିଲେ ସେ ଚିନ୍ତିତ ହୋଇଯାଏ । ମନ ହୁଏ ପଳାଇ ଯାଆନ୍ତା । ରାଜାଙ୍କ ସାଥିରେ ଦୁଃଖ ସୁଖ ହୁଅନ୍ତା । ଏଥର ଯିବ ବୋଲି ସେ ନିଷ୍ପତ୍ତି ନେଲା ।

ପିଲାମାନଙ୍କଠାରୁ ବିଦାୟ ନେଇ ସେ ବାହାରି ପଡ଼ିଲା । ଆସିଲା ବେଳର ପ୍ରତିଶ୍ରୁତି ତା'ର ମନେ ପଡ଼ିଲା । ରାଜାଙ୍କ ପାଇଁ ଉପହାର ନେବାପାଇଁ ସେ କଥା ଦେଇଛି । ତାକୁ ଗୋଟିଏ ଉପହାର ବାହାର କରିବାକୁ ହେବ । ତାହା ହେବ ଅଦ୍ଭୁତ, ଅନୁପମ ଓ ଅଭୁତ । ବହୁତ ଚିନ୍ତା ପରେ ପରୀରାଇଜର ସେଓକଥା ତା' ମନକୁ ଆସିଲା । ସେ ସେଓ ଖାଇଲେ ବୃଦ୍ଧ ଯୁବକ ହୁଏ । ରାଜାଙ୍କୁ ସେ ସେଓଟିଏ ଦେଲେ, ରାଜା ଖାଇ ଯୁବକ ହୋଇଯିବେ । ତାଙ୍କ ଆନନ୍ଦର ସୀମା ରହିବ ନାହିଁ । ବୃଦ୍ଧ ସେ ଅଭୁଲା ହୋଇ ରହିଯିବ । ସେ ଆଉ ହେଳା କଲା ନାହିଁ । ସିଧା ପରୀରାଇଜର ବଗିଚାକୁ ଉଡ଼ିଚାଲିଲା ।

ପରୀରାଇଜ ସୁନ୍ଦର । ଉଦ୍ୟାନ ତାର ଚମତ୍କାର । ଚିର ବସନ୍ତ ସେଠାରେ ବିରାଜିତ । ଗଛ ସବୁ ଫୁଲ ଫଳରେ ଭରପୁର । ସେ ସବୁ ଦେଖି ଶୁଆଟି ମୁଗ୍ଧ । ଆଶ୍ଚର୍ଯ୍ୟ ବି । ସେ ଉଡ଼ି ଉଡ଼ି ଯାଇ ସେଓ ଗଛରେ ବସିଲା । ଦେଖିଲା—ଗଛ ମୂଳରେ ଗୋଟିଏ ଭଙ୍ଗା ଡାଳ ପଡ଼ିଛି । ସେଥିରେ ଦୁଇଟି ପାଚିଲା ସେଓ ଲାଗିଛି । ସେମାନେ ଗୋଲାପ ରଙ୍ଗର । ମନଟା ତାର ଖୁସି ହୋଇଗଲା । ଅପେକ୍ଷା ଆଉ କଲା ନାହିଁ । ସେଇ ଡାଳଟିକୁ ଥଣ୍ଟରେ ଧରି ସିଧା ରାଜ ପ୍ରାସାଦକୁ ଚାଲିଲା । ତାର ଗୋଟିଏ ଚିନ୍ତା, ସେ କେମିତି ରାଜାଙ୍କୁ ଭେଟିବ । ସେଓ ଦୁଇଟିକୁ ତାଙ୍କୁ ଉପହାର ଦେବ । ରାଜା

ତାକୁ ଖାଇ ଯୁବକ ପାଲଟିଯିବେ । ଘର ଖୁସି ହେବେ । ସେଥିପାଇଁ ସେ ବାଟରେ ଟିକଏ ବି ବିଶ୍ରାମ ନେଇ ନାହିଁ । ମନ ତାର ଉଚ୍ଛନ୍ନ । କ୍ଳାନ୍ତି ତାକୁ ଜଣା ପଡୁନଥାଏ । ଡେଣାକୁ ତାର ଜୋରରେ ହଲାଇ ହଲାଇ ସେ ରଜାଙ୍କ ଉଆସକୁ ଉଡ଼ି ଯାଉଥାଏ ।

ରାଜଧାନୀରେ ଶୁଆର ଆବିର୍ଭାବ । ଏ ଖବର ଚାରିଆଡ଼େ ରାଷ୍ଟ୍ର ହୋଇଗଲା । ଲୋକେ ଶୁଆକୁ ଦେଖିବାକୁ ଧାଇଁଲେ । ଖବର-ପାଇ ରଜା ଖୁସି ହେଲେ ନାହିଁ । ବରଂ ଭାବିଲେ— ଉଡ଼ିଯାଇଥିବା ପକ୍ଷୀ ଫେରେ ନାହିଁ । ଛ'ମାସ ପାଇଁ କଥା ଦେଇ ବର୍ଷକ ପରେ ଶୁଆଟିର ପ୍ରତ୍ୟାବର୍ତ୍ତନ, ଆଶ୍ଚର୍ଯ୍ୟ-ଜନକ । ରଜାଙ୍କ ମନରେ ତେଣୁ ସନ୍ଦେହ ।

ଏଇ ସମୟରେ ଶୁଆଟି ରଜାଙ୍କ ନିକଟରେ ପହଞ୍ଚିଗଲା । ରଜାଙ୍କ ସମ୍ମୁଖରେ ସେଓ ଲଗିଥିବା ଡାଳଟି ରଖି କହିଲା— "ମହାରାଜ ! ମୋ ପ୍ରତିଜ୍ଞା ମୁଁ ରଖିଛି, ଅବଶ୍ୟ ଟିକଏ ଡେରିରେ ।" ତା ପରେ ସେ ରଜାଙ୍କ କାନ୍ଧରେ ବସି ଡେଣା ଫଡ଼ ଫଡ଼ କଲା । ତାର ଥଣ୍ଟକୁ ରଜାଙ୍କ ଗାଲରେ ଘସିଲା ।

ରଜା ଭାବୁଥାନ୍ତି—ଅପରୂପ ଯାଗା । ସେଠି କୁଆ କୋଇଲି ବି ନାହିଁ ! ସେଠା ଯାହା ତାକୁ ଭଲ, ପୁଣି କୋଳାହଳମୟ ରଜାପ୍ରାସାଦକୁ ପ୍ରତ୍ୟାବର୍ତ୍ତନର ତାତ୍ପର୍ଯ୍ୟ ଅବୋଧ । ରଜା ଗମ୍ଭୀର । ନୀରବ ।

ଥରେ ମନରେ ସନ୍ଦେହ ପଶିଲେ, ତାହା କାୟା ବିସ୍ତାର କରେ । ସବୁ ଖଳ କଥା ମନକୁ ଆସେ । ରଜା ଶୁଆକୁ ବିଶ୍ୱାସ କରିପାରିଲେ ନାହିଁ । ନିଜେ ସେଓ ଖାଇଲେ ନାହିଁ । ପାଖରେ କୁକୁରଟିଏ ଶୋଇଥିଲା । ପରୀକ୍ଷା ପାଇଁ ତା ପାଖକୁ ସେଓଟି

ଫିଙ୍ଗି ଦେଲେ । କୁକୁରଟି ଆନନ୍ଦରେ ସେଓଟି ଖାଇଦେଲା । ଅଳ୍ପ ସମୟ ପରେ ସେ ଛଟପଟ ହେବାକୁ ଲଗିଲା । ତା ପରେ ପରେ ସେ ମରିଗଲା ।

ଶୁଆଟି କୃତଘ୍ନ । ବିଶ୍ୱାସ ଘାତକ । ଏଥିରେ ରାଜା ନିଃସନ୍ଦେହ । ରାଜାଙ୍କୁ ମାରିବା ପାଇଁ ସେ ଯେ କୌଶଳ ଅବଲମ୍ବନ କରିଥିଲା, ରାଜା ଏଥିରେ ଦୃଢ଼ । ରାଜା ରାଗିଗଲେ । ଶୁଆଟିଠାରୁ କୈଫିୟତ୍ ବୁଝିଲେ ନାହିଁ । ସେ ଡାହାଣ ହାତରେ ତାର ବେକଟିକୁ ଚିପି ଦୂରକୁ ଫିଙ୍ଗି ଦେଲେ ।

ରାଜା ଅନ୍ୟ ସେଓଟିକୁ ଅନାଇ ଦେଖିଲେ । ତାହାର ରଙ୍ଗ ଚମତ୍କାର । ଲୋଭନୀୟ । ଖାଇବାର ଲାଳସା ଆସିଲେ, ମଣିଷ ଖାଇଦିଏ । ତେଣୁ ଏଇ ସେଓଟିକୁ ପାଖରେ ରଖି ଲାଭ ନାହିଁ । ରାଜା ନିଜ ତତ୍ତ୍ୱାବଧାନରେ ସେଓଟିକୁ ବଗିଚାର ଗୋଟିଏ କୋଣରେ ପୋତିଦେଲେ ।

ମଞ୍ଜି ରହିଥିଲା ସେଓ ଭିତରେ । ତାହା ଜୀବନ ଶକ୍ତି ସମ୍ପନ୍ନ । ଅଳ୍ପଦିନ ପରେ ସେଥିରୁ ଗଛଟିଏ ବାହାରିଲା । ହୁ ହୁ ହୋଇ ଗଛଟି ବଢ଼ିଗଲା । ଦେଖିବାକୁ ବି ଗଛଟି ସୁନ୍ଦର । ଲୋଭନୀୟ । ନୟନାଭିରାମ । ଦର୍ଶକ ଆକର୍ଷଣୀୟ । ରାଜାଙ୍କ କାନରେ ଏ କଥା ପଡ଼ିଲା । ରାଜା ଭାବିଲେ, ଫଳ ଧରିଲେ ଲୋକେ ଯେ ଖାଇବେ ଏହା ନିଃସନ୍ଦେହ । ସେମାନଙ୍କର ମୃତ୍ୟୁ ଅନିବାର୍ଯ୍ୟ । ସେଥିପାଇଁ ସେ ଦାୟୀ ହେବେ । ପ୍ରତିଷେଧାତ୍ମକ ବ୍ୟବସ୍ଥା ରାଜାର କର୍ତ୍ତବ୍ୟ । ତେଣୁ ଗଛ ଚାରିପଟେ କଣ୍ଟା ବାଡ଼ ଦିଆଗଲା । ଘୋଷଣା କରାଗଲା — ଯେ ଗଛ ପାଖକୁ ଯିବା ଏକ ଗୁରୁତର ଅପରାଧ । ତାର ଶାସ୍ତି ମୃତ୍ୟୁ ଦଣ୍ଡ । ସେଦିନୁ ଲୋକେ ସେ ଗଛ ପାଖକୁ ଯାଆନ୍ତି ନାହିଁ । ତାକୁ ମୃତ୍ୟୁ ଗଛ ବୋଲି କହନ୍ତି ।

ସେଇ ଗଛରେ ପ୍ରତିବର୍ଷ ସେଓ ଧରେ । ପାଚେ । ପାଚିଲା ସେଓ ଗଛ ମୂଳରେ ଜମା ହୁଏ । ସମସ୍ତଙ୍କର ତ ମରିବାକୁ ଭୟ । କେହି କେବେ ଭୁଲରେ ବି ସେଓକୁ ଆଣିବାକୁ ଚେଷ୍ଟା କରନ୍ତି ନାହିଁ ।

ବଗିଚାକୁ ଲାଗି ଘୋଡ଼ାଶାଳ । ତା' ପାଖକୁ ଘୋଡ଼ାଶାଳ ସଫା କରିବା ମେହେନ୍ତର ଘର । ସେଠି ମେହେନ୍ତର ଆଉ ତା ସ୍ତ୍ରୀ ରହନ୍ତି । ସେମାନେ ବୁଢ଼ାବୁଢ଼ୀ ହେଲେଣି । ପିଲାଝିଲା ତାଙ୍କର କେହି ନାହିଁ । ରାଜ ଦରବାରରୁ ଯାହା ମିଳେ, ସେଥିରେ ସେମାନେ ସଂସାର ଚଳାଇ ନଅନ୍ତି ।

ସେମାନେ ଆଉ କାମକୁ ପାରୁନାହାଁନ୍ତି । ଘୋଡ଼ାଶାଳ ବି ଠିକ୍ ସମୟରେ ଭଲଭାବରେ ସଫା ହୋଇପାରେ ନାହିଁ । ସେଥିପାଇଁ ସହିସମାନେ ଅସନ୍ତୁଷ୍ଟ । ଅସନ୍ତୁଷ୍ଟ ସହିସମାନେ ଗାଳି ଦିଅନ୍ତି । ଏ ବୟସରେ ଭର୍ତ୍ସନା ଅସହ୍ୟ । ବେଦନାଦାୟକ । ତା'ଛଡ଼ା ରାଜ ଦରବାରରୁ ଯାହା ମିଳେ, ତାହା ପେଟକୁ ଅଣ୍ଟେ ନାହିଁ । ବେଳେ ବେଳେ ଉପବାସ ରହିବାକୁ ପଡ଼େ । ଘାରି ବାଧେ । ସେମାନଙ୍କର ଜୀବନ ଅଶାନ୍ତ । ମର୍ମନ୍ତୁଦ । ବୁଢ଼ାର ଆଉ ବଞ୍ଚିବାର ଆଗ୍ରହ ନାହିଁ । ସବୁବେଳେ ଭାବେ, ସେ ମରିଗଲେ, ତରି ଯାଆନ୍ତା । ହେଲେ, ବୁଢ଼ୀ ବିଚରା । ତାର ମରିବାକୁ ଘାରି ଭୟ । ତାରି ଯୋଗୁ ବୁଢ଼ା ଖାଲି ବଞ୍ଚି ରହିଛି ।

ଦିନେ ବୁଢ଼ାର ଆଖି ସେଓ ଗଛ ଉପରେ ପଡ଼ିଲା । ତା' ମୂଳରେ ବହୁତ ସୁନ୍ଦର ପାଚିଲା ସେଓ ଜମା ହୋଇଥିବାର ସେ ଦେଖିଲା । ତାର ଲୋଭ ହେଲା । ସେ ବୁଢ଼ୀକୁ ଡାକି କହିଲା—"ରାଜାଙ୍କଠାରୁ ଯାହା ମିଳୁଛି, ସେଥିରେ ତ ପେଟ ପୂରୁ ନାହିଁ ।

ଏଣେ ସନ୍ତ୍ରସମାନେ ଗାଳ ଦେଉଛନ୍ତି । ସେସବୁ ପ୍ରାଣକୁ ବାଧୁଛି । ଆଉ ଏ ଜୀବନ ରଖି ଲାଭ ନାହିଁ । ଆ, ଯିବା । ମୃତ୍ୟୁ ଗଛର ଫଳ ଖାଇବା । ଉଭୟେ ତ ଏକାବେଳକେ ମରିବା । କାହାପାଇଁ କେହି ଦୁଃଖ କରିବାକୁ ପଡ଼ିବ ନାହିଁ ।"

ବୁଢ଼ା କଥା ବୁଢ଼ୀର ମନକୁ ବେଶ୍ ପାଇଲା । ସେଇଦିନ ରାତିରେ ଉଭୟେ ବାଡ଼ି ଡେଇଁ ଗଛ ପାଖକୁ ଗଲେ । ସେଓ ଖାଇଲେ । ସେମାନେ ଜାଣନ୍ତି, ଗୋଟିଏ ଖାଇଲେ ଯାହା ହେବ, ବେଶୀ ଖାଇଲେ ବି ସେଇଆ ହେବ । ତେଣୁ ତାଙ୍କ ମନରେ ସଙ୍କୋଚ କିଛି ନଥିଲା । ବହୁଦିନୁ ସେମାନେ ପେଟପୁରି ଖାଇନଥିଲେ । ସୁଯୋଗ ମିଳିଛି । ତା'ଛଡ଼ା ସେଓଗୁଡ଼ିକ ଭରି ମିଠା । ତେଣୁ ସେମାନେ ସେଥିରୁ ପେଟେ ପେଟେ ଖାଇଦେଲେ । କିନ୍ତୁ ସେମାନେ ଆଶ୍ଚର୍ଯ୍ୟ । ମଲେ ତ ନାହିଁ, ବରଂ ଦେହରେ ଅପୂର୍ବ ପରିବର୍ତ୍ତନ । ବାର୍ଦ୍ଧକ୍ୟର ଚିହ୍ନବର୍ଣ୍ଣ ନାହିଁ । ଯୌବନ ଫେରି ଆସିଛି । ସେଥିପାଇଁ ସେମାନେ ଉନ୍ମତ୍ତ । ବିଭୋର । ସେମାନେ ପରିବେଶ ଭୁଲିଗଲେ । ମଜୁଆଳ ହୋଇ ନାଚିବାକୁ ଲାଗିଲେ ।

ରାତି ଯେ ପାହି ସକାଳ ହେଲା, ସେମାନେ ଜାଣିପାରିଲେ ନାହିଁ । ବଗିଚାର ମାଳୀ ସକାଳୁ ସେମାନଙ୍କୁ ଦେଖି ଆଶ୍ଚର୍ଯ୍ୟ । ରାଜାଦେଶର ବିରୁଦ୍ଧାଚରଣ, ଅସହ୍ୟ । ତେଣୁ ସେ ହଲ୍ଲା କଲା । ତା ପାଟି ଶୁଣି ଘୋଡ଼ାଶାଳର ରକ୍ଷକମାନେ ସେଠି ଆସି ହାଜର । କେହି ସେମାନଙ୍କୁ ଚିହ୍ନିପାରିଲେ ନାହିଁ । ବଗିଚା ମାଳୀର ପାଟିରେ ବୁଢ଼ା ବୁଢ଼ୀଙ୍କର ହୋସ ଆସିଲା । ସେମାନେ ଘୋଡ଼ାଶାଳର ମେହେନ୍ତର ଓ ମେହେନ୍ତରାଣୀ ବୋଲି ପରିଚୟ ଦେଲେ । କେହି ତାଙ୍କ କଥା ବିଶ୍ୱାସ କଲେ ନାହିଁ । ବିଦ୍ରୂପ କରି ହସିଲେ ।

ସେମାନଙ୍କୁ ରାଜାଙ୍କ ପାଖକୁ ନିଆଗଲା । ରାଜାଙ୍କୁ କୁହାଗଲା ଯେ ସେମାନେ ରାଜାଦେଶ ଲଙ୍ଘନ କରି ସେଓ ଗଛ ମୂଳରେ ନୃତ୍ୟ କରୁଥିଲେ । ଏହା ଏକ ଗୁରୁତର ଅପରାଧ । ତା'ଛଡ଼ା ଏଥିପାଇଁ ଦଣ୍ଡ ଘୋଷଣା ହୋଇଛି । ଆଦେଶ ଦେଲେ ପ୍ରାଣଦଣ୍ଡ ଦିଆଯିବ ।

ପ୍ରମାଣ ସବୁ ଅଛି । ରାଜାଙ୍କର କିଛି କହିବାର ନଥିଲା । ରାଜା ଏଥିରେ ସମ୍ମତି ଦେଲେ ।

ହୁକୁମ ଶୁଣି ବୁଢ଼ା ବୁଢ଼ୀ ଗୁନିଆ । ଉପରେ ଥରିଲେ । ତା'ପରେ ଅନୁନୟ କରି କହିଲେ—"ମହାରାଜ ! ଆମେ ତୁମ୍ଭଙ୍କର ଘୋଡାଶାଳର ମେହେନ୍ତର ଓ ମେହେନ୍ତରାଣୀ । ବାର୍ଦ୍ଧକ୍ୟ ଯୋଗୁଁ ଆମ ଜୀବନ ଅସହ୍ୟ ହେଲା । ପେଟକୁ ଦୁଇବେଳା ଦି'ମୁଠା ମିଳିଲା ନାହିଁ । ତା'ଛଡ଼ା ତୁମ୍ଭଙ୍କ କାମ ଠିକ୍‌ଭାବେ କରିପାରିଲୁ ନାହିଁ । ସନ୍ତ୍ରୀ ମାନେ ହତଶ୍ରଦ୍ଧାଭାବରେ ଗାଳିଦେଲେ । ଏ ବୟସରେ ସେ ସବୁ ବହୁତ ବାଧିଲା । ଜୀବନ ଦୁର୍ବିସହ ହୋଇ ଉଠିଲା । ସ୍ଥିର କଲୁ—ଏ ପ୍ରାଣ ହାରିବୁ । ଶୁଣିଥିଲୁ ସେଓ ଗଛର ଫଳ ଖାଇଲେ ମୃତ୍ୟୁ ଅନିବାର୍ଯ୍ୟ । ସେଓ ଖାଇଲେ କଷ୍ଟ ହେବ ନାହିଁ ଅଥଚ ମୃତ୍ୟୁ ହୋଇଯିବ । ଏହାଠାରୁ ଆଉ ଉତ୍ତମ ବ୍ୟବସ୍ଥା ଆମେ ଭାବି ପାରିଲୁ ନାହିଁ । ବିଚାର କରି ସେଓ ଖାଇବୁ ବୋଲି ସ୍ଥିର କଲୁ । ତେଣୁ ସ୍ୱାମୀ ଓ ସ୍ତ୍ରୀ ଉଭୟେ ରାତିରେ ବାଡ଼ି ଡେଇଁ ସେଓ ଗଛ ପାଖକୁ ଗଲୁ । ପେଟେ ପେଟେ ସେଓ ଖାଇଲୁ । ମଲୁ ତ ନାହିଁ ବରଂ ଯୌବନ ଫେରି ପାଇଲୁ । ତୁମ୍ଭଙ୍କ ଆଦେଶରେ ମୃତ୍ୟୁ ଦଣ୍ଡ ମିଳିବ । ଆପତ୍ତି ନାହିଁ । ମରିବାକୁ ଆସିଥିଲୁ । ଦଇବ ଜୀବନ ନେଲା ନାହିଁ । ଯୌବନ ଦେଲା । ତୁମ୍ଭେ ଜୀବନ ନେବ, ନିଅନ୍ତୁ । ଆମର ଆପତ୍ତି ନାହିଁ ।"

ରାଜା ନବାକ । ସ୍ତମ୍ଭୀଭୂତ । ଏମାନଙ୍କ କଥାରେ ଅବିଶ୍ବାସର କାରଣ ନାହିଁ । ତେଣୁ ତାହା ପରୀକ୍ଷା ଯୋଗ୍ୟ । ପରିଷଦଙ୍କ ପରାମର୍ଶରେ ସେମାନଙ୍କ ମୃତ୍ୟୁଦଣ୍ଡ ସ୍ଥଗିତ ରହିଲା । ରାଜାଙ୍କ ଆଦେଶ-ସବୁଠାରୁ ଅକର୍ମଣ୍ୟ ବୃଦ୍ଧକୁ ଅଣାଯାଇ ସେଓ ଖାଇବାକୁ ଦିଆଯାଉ ।

ସୈନ୍ୟମାନେ ଧାଇଁଲେ । ସବୁଠାରୁ ଚଳତ୍‌ଶକ୍ତି ରହିତ, ଦୃଷ୍ଟିଶକ୍ତି ଓ ଶ୍ରବଣଶକ୍ତି ଲୁପ୍ତ ବୃଦ୍ଧକୁ ଆଣିଲେ । ସେଓଟି ତାକୁ ଖାଇବା ପାଇଁ ବାଧ୍ୟ କରାଗଲା । ବୃଦ୍ଧ କିନ୍ତୁ ସେଓ ଖାଇବାକୁ ପରାଙ୍ମୁଖ । ସେ ଆଉ କେତୋଟି ଦିନ ବଞ୍ଚିବାକୁ ଅନାଗ୍ରହୀ । ରାଜାଙ୍କ ଆଦେଶରେ ସେ ଖୁବ୍ କଷ୍ଟରେ ସେଓଟି ଖାଇଲା । ମୁହୂର୍ତ୍ତିଏ ବି ଯାଇନି । ଧୁଡୁ ଧୁଡୁ ଚମ ତାର ଉଭେଇଗଲା । ଆଖିର ଜ୍ୟୋତି ଓ ଶ୍ରବଣଶକ୍ତି ତାର ପୁନରାଗତ । ସେ ଏବେ ଏକ ନବଯୁବା । ରାଜା, ପରିଷଦ ଓ ପ୍ରଜାପାଟକ ଅନାଇଥାଆନ୍ତି । ସମସ୍ତେ ବିସ୍ମିତ । ଆଶ୍ଚର୍ଯ୍ୟ । ନବାକ ।

ରାଜା ରାଜ ସମ୍ମାନ ଭୁଲିଗଲେ । ମନ୍ତ୍ରୀ ତାଙ୍କର ଗାଲମାକୁ ପାଟଶୋର ଦେଲେ । ଉଭୟେ ଯାଇ ଗୋଟିଏ ଲେଖାଏଁ ସେଓ ଖାଇଲେ । ସେମାନଙ୍କର ବାର୍ଦ୍ଧକ୍ୟ ଉଭେଇଗଲା । ସେମାନେ ବର୍ତ୍ତମାନ ଯୁବକ । ଦୀପ୍ତିବନ୍ତ । ଉଜ୍ଜ୍ୱଳ ।

ତା' ପରେ ଚାଲିଲା ହଟଗୋଳ । ଠେଲା ପେଲା । ବାଡ଼ଆ-ବାଡ଼ି । ସେଓ ଖାଇବାକୁ ସମସ୍ତେ ବ୍ୟସ୍ତ ।

ରାଜା ନବ ଯୌବନ ପାଇ ବ୍ୟସ୍ତ । ବିବ୍ରତ । ବିଚଳିତ । ଶୁଆଟି ପାଇଁ ପ୍ରାଣ ତାଙ୍କର କାନ୍ଦି ଉଠିଲା । ଭାବିଲେ—ଶୁଆଟି

ତାଙ୍କୁ ଯୁବକ କରିବାକୁ ସେଓ ଆଣିଥିଲା । ତାହା ସେ ଜାଣି ପାରିଲେ ନାହିଁ । ନିଜ ହାତରେ ବିଶ୍ୱସ୍ତ ଜୀବର ପ୍ରାଣ ନେଲେ । ତାହା ତାଙ୍କର ଅବିଚାର ଅନ୍ୟାୟ ଅମାନୁଷିକତା ପାଇଁ ଅନୁତପ୍ତ । ଏକ୍ଷଣରେ ବିଭ୍ରାନ୍ତ ହେଲେ, ଚିନ୍ତା ଆସେ । ସେ ଚିନ୍ତା ସର୍ବଗ୍ରାସୀ । ମଣିଷକୁ ଖାଇଯାଏ । ରାଜା ଚିନ୍ତାରେ ଭାଙ୍ଗି ପଡ଼ିଲେ । ରାଜ-କାର୍ଯ୍ୟରେ ବ୍ୟାଘାତ ଘଟିଲା ।

ମନ୍ତ୍ରୀ ପରିଷଦ ବିଚଳିତ । ସାନ୍ତ୍ୱନା ବାଣୀ ଶୁଣିବାକୁ ରାଜା ପରାଙ୍ମୁଖ । ସେମାନେ ଚିନ୍ତିତ—ରାଜାଙ୍କ ନବ ଯୌବନ ପାଇଁ ସେଓ ଯଦି ଉଦ୍ଦିଷ୍ଟ, ତାକୁ ଖାଇ ଏଡେବଡ କୁକୁରର ମୃତ୍ୟୁ ବିସ୍ମୟକର । ବାଖ୍ୟାତୀତ । ଏହା ଏକ ସମସ୍ୟା । ସମାଧାନ ଅପରିହାର୍ଯ୍ୟ । ସେଥିପାଇଁ ବହୁ ରାଜ୍ୟରୁ ବିଜ୍ଞ ପଣ୍ଡିତମାନଙ୍କୁ ଏକ ତର୍କ ସଭାକୁ ନିମନ୍ତ୍ରଣ କରାଗଲା । ସେମାନଙ୍କୁ ସମସ୍ୟାଟି ଦେଇ ସମାଧାନ କରିବାକୁ କୁହାଗଲା ।

ବହୁ ତର୍କ, ଅନୁଧ୍ୟାନ ଆଉ ସୁଚିନ୍ତିତ ଆଲୋଚନା ପରେ ସେମାନେ ନିଷ୍ପତ୍ତି କଲେ ଯେ ଏ ଫଳ ଅସାଧାରଣ । କୁହୁକ ଶକ୍ତିସମ୍ପନ୍ନ । ପରୀ ଉଦ୍ୟାନରେ ଏହି ଫଳ ମିଳେ । ରାଜାଙ୍କୁ ନୂଆ ଯୁବା କରିବା ପାଇଁ ଶୁଆଟି ସେଓ ଆଣିବାକୁ ଯାଇଥିଲା । ସେଇ ଉଦ୍ୟାନର ରକ୍ଷକ ଏକ ବିଷଧର ସର୍ପ । ଡାଳଯୁକ୍ତ ସେଓ ଦୁଇଟି ତଳେ ପଡ଼ିଥିଲା । ସ୍ୱଭାବ ବଶତଃ ସର୍ପ ଗୋଟିକୁ ଦଂଶନ କରିଥିଲା । ଶୁଆ ସେ ବିଷୟ କିଛି ଜାଣି ନଥିଲା । ଦଂଶିତ ଫଳଟି ଖାଇ କୁକୁର ମଲା ।

ରାଜା ବିଚକ୍ଷଣ । ଉଦ୍ଦେଶ୍ୟ ମଙ୍ଗଳମୟ ଆଉ କର୍ମ ଦୋଷହୀନ ହେଲେ, ଫଳ ଦଣ୍ଡମୟ ହୋଇପାରେ ନାହିଁ । ଏକଥା ରାଜାଜାଣନ୍ତି,

ଶୁଆ ନିର୍ଦ୍ଦୋଷ । ରାଜା ଏଥର ସଚେତନ । ପୁଙ୍ଖାନୁପୁଙ୍ଖ ଆଲୋଚନା ବିନା ପ୍ରିୟତମ ଶୁଆକୁ ଦୋଷୀ ସାବ୍ୟସ୍ତ କରିବାଟା ତାଙ୍କର ଏକ ଅବିଚାର । ରାଜା ସେଥିପାଇଁ ସନ୍ତପ୍ତ । ଅନୁତପ୍ତ । ତାଙ୍କର ପ୍ରାୟଶ୍ଚିତ୍ତ ଏକାନ୍ତ ଆବଶ୍ୟକ ।

ରାଜା ଶୁଆ ପାଇଁ ସେଓ ଗଛ ମୂଳରେ ସମାଧିଟିଏ କଲେ । ପ୍ରତିଦିନ ସକାଳେ ଓ ସନ୍ଧ୍ୟାରେ ସେଠି ସେ ବସି ରହନ୍ତି । ସମାଧି ଉପରେ ଫୁଲ ଚଢ଼ାନ୍ତି ।

ରାଜା ଅତୁଳ କ୍ଷମତାର ଅଧିକାରୀ । ସମସ୍ତେ ରାଜାଙ୍କୁ ସନ୍ତୁଷ୍ଟ କରିବାକୁ ବ୍ୟଗ୍ର । ସେଥିପାଇଁ ରାଜାଙ୍କ ଦୃଷ୍ଟିକୁ ଆସିବାକୁ ସେଠାରେ ଅଶେଷ ଲୋକଙ୍କର ଗହଳି । ରାଜାଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେମାନେ ସେଠି ଫୁଲ ଅଜାଡନ୍ତି । ଘଣ୍ଟା ଘଣ୍ଟା ଧରି ଆରାଧନା କରନ୍ତି ।

ଲୋକେ ଦେଖିକରି ଶିଖନ୍ତି । ଅନୁଧ୍ୟାନ ଅଳ୍ପ ଲୋକଙ୍କ ଅଭ୍ୟାସ । ଅନ୍ଧ ବିଶ୍ୱାସ ଜମାଟ ବାନ୍ଧେ । ମନଗଢ଼ା ଗପର ପ୍ରସାର ଆହୁରି ଦୃଢ଼ୀଭୂତ କରେ । ଲୋକେ ଏହାକୁ ତୀର୍ଥ ବୋଲି ଭାବିଲେ ।

ଏବେ ଏହା ସେଇ ରାଜ୍ୟର ଏକ ପବିତ୍ର ପୁଣ୍ୟ ତୀର୍ଥ ।



# ବଂଧୁତ୍ୱ

ମୟୂରର ଦେହ ଉଜ୍ଜ୍ୱଳ । ରଙ୍ଗରେ ରଞ୍ଜିତ । ତାର ପୁଚ୍ଛ ଲମ୍ବା । ଚେହେରା ମନୋରମ । ତାର ଗତି ସୁଠାମ । ସାବଲୀଳ ଓ ଦର୍ଶନୀୟ । ବର୍ଷା ଆସିଲେ ସେ ପୁଚ୍ଛ ଟେକି ନାଚେ । ପୁଚ୍ଛ ତାର ଅର୍ଦ୍ଧବୃତ୍ତାକାର ହୋଇଯାଏ । ଗାଢ଼ ନୀଳ ଚନ୍ଦ୍ରିକାରେ ତାହା ପୂର୍ଣ୍ଣ । ଅନବଦ୍ୟ ସୁଷମାର ଭଣ୍ଡାର । ସେଥିରେ ପୁଣି ତାର ନୃତ୍ୟ ଅପୂର୍ବ, ଅଦ୍ଭୁତ, ଚିତ୍ତାକର୍ଷକ, ପ୍ରାଣସ୍ପର୍ଶୀ । ଏସବୁ ଦେଖି ବିଲୁଆଟି ମୁଗ୍ଧ । ଅଭିଭୂତ । ମୟୂର ସାଥିରେ ବନ୍ଧୁତ୍ୱ କରିବାକୁ ସେ ପାଗଳ ।

ମୟୂର ଏକ ନିରର୍ଥକ ଜୀବ । ସେ ବୁଦ୍ଧିହୀନ । ଆତ୍ମାଭିମାନୀ । ସ୍ୱକେନ୍ଦ୍ରିକ । ଯେଉଁ ବାଟରେ ଯାଏ ସେହି ବାଟରେ ସେ ଫେରେ । କାହାକୁ ଅନାଏ ନାହିଁ । ସେ କାହା ସାଥିରେ ସମ୍ପର୍କ ରଖେ ନାହିଁ । କାଠ ଗଦାରୁ ଖାଦ୍ୟ ସଂଗ୍ରହ କରି ଖାଏ । ପ୍ରତିଦିନ ସକାଳୁ ପି...ହୁ...ପି.. ହୁ ଚିତ୍କାର କରେ । ତାର ସ୍ୱର ରୁକ୍ଷ । କର୍କଶ । ଶ୍ରୁତିକଟୁ । କାରୁଣ୍ୟପୂର୍ଣ୍ଣ । ରୂପ ଓ ସ୍ୱର ଏକାନ୍ତ ଅସଙ୍ଗତ । ଅସାମଞ୍ଜସ୍ୟ । ଶୁଣିଲା ବେଳେ ମନଟା ତାର ମରିଯାଏ ।

ବିଲୁଆଟି ମୟୂର ପଛେ ପଛେ ଯାଏ । ମୟୂର ନଜରକୁ ଆସିବାକୁ ବହୁତ ଚେଷ୍ଟା ସେ କରିଛି । କିନ୍ତୁ ମୟୂର ତାକୁ ଆଡ଼-ଆଖିରେ ବି ଅନାଏ ନାହିଁ । ସେ କଥା ତା ସହିତ ଆରମ୍ଭ କରିବାକୁ ଭାବେ, କିନ୍ତୁ କିମିତି କ'ଣ କହିବ ସ୍ଥିର କରିପାରେ ନାହିଁ ।

ବଲୁଆ ନଚେଷ୍ଟ ନୁହେଁ । ସେ ସୁବିଧା ନେବାକୁ ବେଳ ଉଣ୍ଡୁଥାଏ । ଦିନେ ମୟୂର ଦେଖାଦେଇ ସାରିବା ପରେ ବଲୁଆଟି ତା ପାଖକୁ ଯାଇ କହିଲା—"ତୁ ଭାରି ସୁନ୍ଦର । କିନ୍ତୁ ତୋର କଣ୍ଠ କର୍କଶ । କାହାକୁ ତାର ଏକ କରୁଣ ଚିତ୍କାର । ତୋ ରୂପକୁ ଏହା ମାନୁନାହିଁ । କୋଇଲି ପରି ମଧୁର ସ୍ୱରରେ ତୁ ଯଦି କୁ—କୁ—ବୋବାନ୍ତୁ, ତା'ହେଲେ ତୋ ରୂପକୁ ସ୍ୱର ବେଶ ମାନନ୍ତା । ତୋର ସମକକ୍ଷ କେହି ବି ହୋଇପାରନ୍ତେ ନାହିଁ ।"

ମୟୂର ଗମ୍ଭୀର । କାହାକୁ ସେ ପାଖରେ ପୂରାଇ ଦିଏ ନାହିଁ । ତା' ସାଥିରେ କଥା କହିବାକୁ କେହି ସାହସ କରନ୍ତି ନାହିଁ । ସହାନୁଭୂତି କଥା ପଦେ ସେ କାହାଠାରୁ ଶୁଣିନାହିଁ । ପ୍ରଥମଥର ପାଇଁ ସେ ବଲୁଆର ଦରଦ କଥା ଶୁଣିଲା । ସେଥିରେ ସେ ତରଳି-ଗଲା । ଭାବିଲା—"ବଲୁଆ ଯାହା କହୁଛି ତାହା ସତ୍ୟ ।" ତେଣୁ ଦୀର୍ଘଶ୍ୱାସ ପକାଇ ସେ କହିଲା—"ମୋର କାହା ସହିତ ସମ୍ପର୍କ ନାହିଁ । ମତେ କିଏ କୋଇଲିର ମଧୁର ସ୍ୱର ଶିଖାଇବ ।"

ବଲୁଆ ତ ଭାରି ଚତୁର । ଦେଖିଲା—କାଟୁଳିଟା ଠିକ୍ ବାଜୁଛି । ତେଣୁ ସେ ଟିକିଏ ବେପରୁଆ ଭାବରେ କହିଲା—"ଇଏ ଗୋଟାଏ କଥା, ଏଇଆ ପୁଣି ହେବନାହିଁ । ଜମା ବ୍ୟସ୍ତ ହୁଅନାହିଁ । ଏ ପୃଥିବୀରେ ଅସମ୍ଭବ କିଛି ନାହିଁ । ଉଦ୍ୟମ କଲେ ସବୁ ହେବ । ଖାଲି ଶିଖିବା କଥା ଯାହା । ତୁ ଯଦି ରାଜି ହେବୁ, ମୁଁ ତୋତେ ଶିଖାଇ ଦେବି ।"

କଥାଟା ମୟୂର ମନକୁ ବେଶ୍ ପାଇଲା । ସେ ବଲୁଆର ପିଚ୍ଛା ଧରିଲା । ସେହି ଦିନୁ ବଲୁଆ ଆଉ ମୟୂର ଭାରି ସାଙ୍ଗ । ଏକାଠି ଖାଆନ୍ତି । ସାଙ୍ଗ ହୋଇ ବୁଲନ୍ତି । ଖୁସିବାସି ଗପ କରି ସମୟ କଟାଇ ଦିଅନ୍ତି ।

ମୟୂର ରୂପରେ ବଲୁଆ ମୁଗ୍ଧ । ତେଣୁ ମୟୂର ଭଳି ହେବା ପାଇଁ ତା'ର ଘୋର ଇଚ୍ଛା । ସେଥିପାଇଁ ସେ ମୟୂର ପଛରେ ଯାଏ । ତାଙ୍କୁ ଅନୁକରଣ କରି ମଧ୍ୟ ଦୁଇଗୋଡ଼ରେ ଚାଲେ । ମୟୂର ନାଚିଲେ, ସେ ତାର ପଛରେ ଲୁଚି ଲୁଚି ଲଙ୍ଗୁଡ଼ ଟେକି ନାଚେ । କେହି ଯେପରି ତାକୁ ନ ଦେଖିବେ, ସେଥିପାଇଁ ସେ ପ୍ରବଳ ଉଦ୍ୟମ କରେ । ସେ ଜାଣେ, ତା'କୁ ଏପରି ଅବସ୍ଥାରେ ଯେ ଦେଖିବ, ସେ ହସିବ । ସମ୍ମାନ ତା'ର ଆଉ ରହିବ ନାହିଁ ।

ବଲୁଆ ଭାବେ ସତ ହିଁ ସତ, ମିଛ ହିଁ ମିଛ । ଚିରଦିନ ସତ ଲୁଚି ରହିପାରେ ନାହିଁ । ଦିନେ ନା ଦିନେ ପ୍ରକଟ ହେବ । ସମୟ ଆସିବ, ସେତେବେଳେ ମୟୂର ଜାଣିବ ଯେ ବଲୁଆର ଶିଖାଇବାର ଶକ୍ତି ନାହିଁ । କେବଳ ମିଛରେ ସେ ତାକୁ ଭଣ୍ଡାଉଛି । ସେ କ୍ଷୁବ୍ଧ ହେବ । ପଦେ ହେଲେ କଥା କହିବ ନାହିଁ । ବରଂ ଏ ଶଠତା ପାଇଁ ସେ ବଲୁଆକୁ ଘୃଣା କରିବ । ଏହା ଯେପରି ନ ହେବ, ସେଥିପାଇଁ ବଲୁଆ ଉପାୟ ପାଞ୍ଚୁଥାଏ ।

ଦିନେ ବଲୁଆଟି ମୟୂରକୁ କହିଲା—"ମନ ମୁନ । ଟିକିଏ ଆଘାତ ପାଇଲେ ଭାଙ୍ଗି ଯାଏ । ଅବସ୍ଥା ବଦଳିଯାଏ । ଅବସ୍ଥା-ଚକ୍ରରେ ଆମର ମନ ବି ବଦଳି ଯାଇପାରେ । ଆଜିଠାରୁ ଆମେ ହୁସିଆର ହେବା । ନଚେତ୍ ଆମର ବନ୍ଧୁତ୍ୱ ଭାଙ୍ଗିଯିବ । ଆମର ଏତେକାଳର ଘନିଷ୍ଠ ସମ୍ପର୍କ ମଧ୍ୟ ଆମେ ଭୁଲିଯିବା । ତା'ପରେ ଦିନ ଆସିବ, ଆମର ବ୍ୟବହାରରୁ ଲୋକେ ଭାବିବେ—ସତେ କି ଆମେ ଦୁଇଜଣ ଅଜଣା ଅଶୁଣା ଆଉ ଅଚିହ୍ନା ।"

ଟିକିଏ ରହି ସେ କହିଲା—"ଶପଥଟି ଭଗବାନଙ୍କ ପାଖରେ ସ୍ୱୀକୃତ । ଯେ ଭାଙ୍ଗେ, ସେ ପାପୀ । ଯମ ଦ୍ୱାରରେ ଦଣ୍ଡ ପାଏ ।

ତା'ଛଡ଼ା ସ୍ନେହ ସ୍ନେଚନରେ ସେ ଘୃଣ୍ୟ ! ସେଥିପାଇଁ ମୁଁ ଭାବୁଛି—ଆମେ ଚିରଦିନ ବନ୍ଧୁ ହୋଇ ରହିବାଲାଗି ଶପଥ ନେବା । ତାହାହେଲେ ଯେ କୌଣସି ଅବସ୍ଥାରେ ଆମ ବନ୍ଧୁତ୍ୱ ଭାଙ୍ଗିବ ନାହିଁ ।"

ମୟୂର ମନକୁ ଏ କଥାଟା ବେଶ୍ ପାଇଲା । ସେ ବାଲୁଆ କଥାରେ ସମ୍ମତ । ସାଥି ହୋଇ ସାଥେ ସାଥେ ସେମାନେ ଶପଥ ନେଇଗଲେ ।

ଦିନକର କଥା । ସେଦିନ ମୟୂର ଭଲ ରସାଳିଆ କୋଳି ଆଣିଥାଏ । ବାଲୁଆ ଧରି ଆସିଥାଏ ଗୋଟିଏ ଛେଳିର ଗୋଡ଼ । ଉଭୟଙ୍କ ଖାଦ୍ୟ ଉତ୍ତମ । ଆନନ୍ଦରେ ସେ ସାହାର ଖାଦ୍ୟ ଖାଇଲେ । ଖାଇ ସାରିବା ପରେ ମୟୂର ଧୀରେ ଧୀରେ ଉଠିଲା । ତା'ପରେ ପଡ଼ିଆକୁ ଗଲା । ସେଠି ଧାଡ଼ି ଧାଡ଼ି କରି ଗାତ ଖୋଳିଲା । ସେ ଯେଉଁସବୁ କୋଳି ଖାଇଥିଲା, ତାର ମଞ୍ଜିକୁ ନେଇ ପୋତିଲା । ତା'ଉପରେ ମାଟିକୁ ଚାପିଦେଲା ।

ବାଲୁଆ ସବୁ ଦେଖୁଥାଏ । ସେଥିରୁ ସେ କିଛି ବୁଝିପାରୁ ନଥାଏ । ବାଧ୍ୟ ହୋଇ ସେ ପଚାରିଲା—"ଏ ସବୁ କଣ କରୁଛ ?"

ମୟୂର କହିଲା—"ଆମ ମା ଆମକୁ ଖୁବ୍ ଯତ୍ନରେ ବଢ଼ାଇଥିଲା । ବହୁତ ଭଲ ଭଲ କଥା ଶିଖାଇଛି । କୌଣସି ଜିନିଷ ନଷ୍ଟ କରିବ ନାହିଁ । ଏହା ଥିଲା ତାର ମଲାବେଳର ପରାମର୍ଶ ତାଗିଦ । ଆମେ ତାକୁ ଖୁବ୍ ଭଲ ପାଉ । ତା କଥା ଜୀବନଯାକ ପାଳୁଛୁ । ମା କଥାନୁସାରେ କୋଳି ଖାଇ ମଞ୍ଜି ପୋତିଲେ ପୁଣ୍ୟ ହୁଏ । ସେଥିପାଇଁ ମୁଁ ମଞ୍ଜିତକ ପୋତିଦେଲି । ଦେଖିବୁ ଏ ମଞ୍ଜିରୁ

ଗଜା ବାହାରିବ । ସେ ଗଜାରୁ ଗଛ ହେବ । ପୁଣି ସେ ଗଛରେ ଫୁଲ ଧରିବ । ବାସନାରେ ଚାରିଆଡ଼ ମହକ ଉଠିବ । ତା'ପରେ କୋଳି ଧରିବ । ସେ କୋଳି ଯେତେବେଳେ ପାଚିବ, ବହୁତ କ୍ଷୁଧାର୍ତ୍ତ ମଯୂର ତାକୁ ଖାଇ ତୃପ୍ତ ହେବେ । ଶାନ୍ତିରେ ନିଃଶ୍ୱାସ ଛାଡ଼ିବେ । ହୁଏତ ଏହା ହୋଇପାରେ—ଫଳ ପାଚିଲା ବେଳକୁ ମୁଁ ନ ଥାଇପାରେ । ସେ ଏକ ସ୍ୱତନ୍ତ୍ର କଥା । ସବୁ କଥା ନିଜପାଇଁ କେହି କରେ ନାହିଁ । କିଏ ଗଛ ଆଗେ ଲଗାଇଥିଲା, ଆମେ ଜାଣିନାହୁଁ । ଆମେ ସେ ଫଳ ଖାଇ ଆନନ୍ଦ ପାଉଛୁ । ସେମିତି ଆମେ କରିଯିବୁ, କିଏ ଭୋଗିବ । ସେ କଥା ଭାବି ଲାଭ ନାହିଁ । ଯେ ଯାହା କରେ, ତା' ନିଜ ପାଇଁ ନୁହେଁ କି ନିଜ କାଳ ପାଇଁ ନୁହେଁ । ସବୁ ଭବିଷ୍ୟତ ବଂଶଧର ପାଇଁ ।"

ମଯୂର ଗୋଟିଏ ପକ୍ଷୀ । ତା'ର ପୁଣି ଭବିଷ୍ୟତ ବଂଶଧର ପାଇଁ ଯୋଜନା ! ଏହା ବଲୁଆକୁ ସ୍ତମ୍ଭୀଭୂତ କରିଦେଲା । ସେ ବି ମଯୂରର ଆଦର୍ଶ ଅନୁକରଣ କରିବ । ମୁହଁ ଗାଲୁରେ କହିଲା— "ମୁଁ ବି ସେଥିପାଇଁ ଖାଇସାରି ହାଡ଼ ପୋତିଦିଏ ।" ତା'ପରେ ସେ ଯାଇ ମାଟି ଖୋଳି ଛେଳି କୁଆର ହାଡ଼କୁ ଟିକିଏ ଟିକିଏ ଗୁଣ୍ଡ଼ ପୋତିଦେଲା ।

ସେଇଠୁ ଜାଗାଟି ସେମାନଙ୍କର ହେଲା ବଗିଚା । ଦୁଇ ବନ୍ଧୁ ସେଠାକୁ ଯାଆନ୍ତି । ବଗିଚାକୁ ଦେଖନ୍ତି ।

କିଛି ଦିନ ପରେ କୋଳି ମଞ୍ଜିରୁ ଅଙ୍କୁର ବାହାରିଲା । ତାକୁ ଦେଖି ମଯୂର ଖୁସି । ଅଥଚ ହାଡ଼ରୁ ଛେଳି କୁଆ ବାହାରିବାର କୌଣସି ଆଭାସ ନାହିଁ । ସେଥିପାଇଁ ବଲୁଆର ମନ ଭାରି କଷ୍ଟ ।

ମୂହଁ ଝାଣରେ ବଲୁଆ କହିଲା—"ହାଡ଼ ତ ଘରି ଝାଣ । ମାସ ମାସ ଧରି ମାଟି ଭିତରେ ତାର ପରିବର୍ତ୍ତନ ହୁଏ ନାହିଁ । ମୁଁ ଏକଥା ଜାଣେ । ଏଥିରୁ ଛେଳକୁଆ ବାହାରିବାକୁ ବହୁତ ସମୟ ନେବ ।"

ମୟୂରଟି ଟିକଏ ହସିଦେଇ କହିଲା,—"ଆରେ ଭାଇ ! ଯୁଗ ଯୁଗ ଧରି ଛେଳ ହାଡ଼ ମାଟି ଭିତରେ ରହିଲେ ବି ଛେଳକୁଆ ହେବ ନାହିଁ । କିନ୍ତୁ ତୋର ଆଶା ଅନନ୍ତ । ଧୈର୍ଯ୍ୟ ଅସୀମ । ଏହା ଦେଖି ମୁଁ ତୋତେ ଧନ୍ୟବାଦ ଦେଉଛି ।"

ଦିନକୁ ଦିନ କୋଳି ଗଛ ବଢ଼ିବାକୁ ଲାଗିଲା । ଗଛର ବୃଦ୍ଧି ମୟୂରର ଆତ୍ମବିଶ୍ୱାସ ବଢ଼ାଇଦେଲା । ତେଣୁ ମୟୂର ବଲୁଆକୁ ଥଟ୍ଟା କରେ । ଏଣେ ହାଡ଼ ପୋତା ହୋଇଥିବା ଜାଗା ଅପରିବର୍ତ୍ତିତ । ଯେମିତି ଥିଲା ସେମିତି ଅଛି । ସେଥିପାଇଁ ବଲୁଆ ଖୁବ୍ ଦୁଃଖିତ । ତେଣେ ମୟୂରର ଅସହ୍ୟ ଥଟ୍ଟା ବେଶ୍ ବାଧେ । ସେ ଅନ୍ତଃ ଭିତରେ ଭିତରେ ରାଗରେ ଜଳିଯାଏ । କିନ୍ତୁ କିଛି କହିପାରେ ନାହିଁ । ମୟୂର ତ ନିର୍ବୋଧ । ବଲୁଆର ମନକଥା ଜାଣିପାରେ ନାହିଁ । ଜାଣିବାକୁ ଚେଷ୍ଟା ବି କରେ ନାହିଁ ।

କୋଳି ଗଛରେ ଫୁଲର ସମ୍ଭାର । ମୟୂର ଆନନ୍ଦରେ ନାଚି ଉଠିଲା । ବଲୁଆକୁ ଫୁଲ ଦେଖାଇ କହିଲା—"ଆଉ ଅଳ୍ପଦିନ ପରେ ଏଥିରେ ଫଳ ଧରିବ । ପାଚିବ । ମୁଁ ମୋର ଜାତିଭାଇଙ୍କୁ ଭୋଜି ଦେବ ।" 'କଣ୍ଟା ଘା'ରେ ଚୂନ ଦେଲାପରି ପୁଣି କହିଲା— "କିଏ ଜାଣେ ତୋ ହାଡ଼ରୁ ଛେଳକୁଆ କେବେ ବାହାରିବ ?"

କୋଳି ପାଚିଲା । ପଞ୍ଝା ପଞ୍ଝା ମୟୂରଙ୍କୁ ଡାକି ମୟୂରଟି କୋଳିର ଭୋଜି କଲା । ବଲୁଆ ସବୁ ଦେଖେ, ନଦେଖିଲାପରି ରହେ ।

ଦିନକର କଥା, ସେଦିନ ମୟୂର ଖାଲି ଖାଲି ବଗିଚାକୁ ଆସିଲା । ସେ ଜାଣେ, ତା' ଗଛ ପାଚିଲା କୋଳିରେ ଭର୍ତ୍ତି ହୋଇଛି । ସେ ଖାଲି ଖାଇବା କଥା । ସେଦିନ ବଲୁଆଟି ବିସ୍ତାର କିଛି ପାଇଲା ନାହିଁ । ଖାଦ୍ୟ ଅନ୍ୱେଷଣରେ ବହୁଆଡ଼େ ଧାଇଁଛି । ସବୁ ନିରର୍ଥକ । ଧାଇଁବା ଖାଲି ସାର ହେଲା । ସେ କ୍ଲାନ୍ତ, ଅବସନ୍ନ ଏବଂ କ୍ଷୁଧାର୍ତ୍ତ । ସେଥିପାଇଁ ସେ ବିବ୍ରତ । ସବୁଦିନ ପରି ମୟୂର ପାଖରେ ସେ ଆସି ଠିଆ ହେଲା । ମୁହଁଟି ଶୁଖିଲା । ବିଷାଦରେ ବିବର୍ଣ୍ଣ । ପଦଟିଏ ବି କିଛି ସେ ମୟୂରକୁ କହିଲା ନାହିଁ ।

ମୟୂର ମନରେ ଅପାର ଆନନ୍ଦ । ଗର୍ବରେ ତା'ର ଗ୍ରୀବା ଫାଟି ପଡ଼ୁଥାଏ । ଗଛରୁ ବହୁତ ପାଚିଲା କୋଳି ନେଇ ତା ସାମନାରେ ଥୋଇଥାଏ । ସେ ଟିକିଏ କଡ଼େଇ କରି ବଲୁଆକୁ ଅନେଇ ଦେଉଥାଏ । ସେ ଦୃଷ୍ଟିରେ ଥାଏ ତାଚ୍ଛଲ୍ୟତା । ଆତ୍ମ-ବଡ଼ିମାର ଆଭାସ ।

ଦୁଃଖ ବେଳେ ବନ୍ଧୁ ଟିକିଏ ସମବେଦନା ନ ଜଣାଇଲେ, ମନକୁ ବାଧେ । ବନ୍ଧୁ ହୋଇ ମୟୂର ବଲୁଆର ଦୁଃଖ ବୁଝିଲା ନାହିଁ । ବରଂ ବଲୁଆର ଅସହାୟତା ଦେଖି ସେ ଖୁସି । ମୁହଁରେ ତାର ଦୁଷ୍ଟାମୀର ହସ । କଥାରେ ତାର ବଦ୍‌ଗୁଣର ସୂଚନା । ବଲୁଆର ମନ ବିଷାକ୍ତ ହୋଇ ଉଠିଲା । ଏତିକିବେଳେ ମୟୂର ବ୍ୟଙ୍ଗ କରି କହିଲା—"ପୁରୁଣା ହାଡ଼ରୁ ଛେଳିଛୁଆ ହେବାକୁ ଆହୁରି ବହୁତ ଦିନ ଲାଗିବ । ଯେତେବେଳେ ଛେଳିଛୁଆ ବାହାରିବ, ତୋର ଆଉ ଚିନ୍ତା ନଥିବ । ସେମାନଙ୍କୁ କ'ଣ କରିବୁ ତୁ ଜାଣି ପାରିବୁ ନାହିଁ ।"

ଏ କଥା ଶୁଣି ବଲୁଆ ରାଗରେ ନିଆଁ । ଖାଲି ଚମଚମ ହେଉଥାଏ । ଏ ଆଡ଼କୁ ମୟୂରର ଲକ୍ଷ୍ୟ ନାହିଁ । ସେ ଥଣ୍ଡା କଡ ମୁହଁ ପାଇଛି । ସେଥିପାଇଁ ସେ ଡୁସିଆର୍ ହେଲା ନାହିଁ । ବରଂ କହି ଚାଲିଥାଏ—"ଭୁ ତ ଦ୍ୱୋକରେ ଆଜନ୍ଦୁ ପାଉନ୍ତୁ ହେଲୁଣି । ହାଡ଼ରୁ ଛେଲଛୁଆ ବାହାରିବାକୁ ଆହୁରି ବହୁତ ଡେରି ଅଛି । ଦ୍ୱୋକରେ ରହିବାକୁ ହେବ । ଦୁଃଖର କଥା— ଭୁ ତ କୋଳି ଖାଇ ପାରିବୁ ନାହିଁ । ନହେଲେ ଯେତେ ଯେତେ କୋଳି ଖାଇବଅନ୍ତୁ ।"

ବଲୁଆର ସେତେବେଳକୁ ରାଗ ପଞ୍ଚମ । ସେ ଆଉ ସମ୍ଭାଳି ପାରିଲା ନାହିଁ । କହିଲା "ମୁଁ ପିନା କୋଳି ଖାଇ ପାରିବି ନାହିଁ । କିନ୍ତୁ କୋଳି ଖାଇବାବାଲାକୁ ତ ଖାଇପାରିବ ।" ଏତକ କହି ସେ ମୟୂର ଉପରକୁ ଝାମ୍ପ ମାରିଲା । ତା ପରେ ତାକୁ ଠାକୁ ଠାକୁ କରି ଗିଳି ପକାଇଲା ।



# ବର ଓ ସର୍ପ

ବହୁଦିନ ତଳେ ବୃଦ୍ଧାଟିଏ ଥିଲା । ସେ ଭାରି ଗରିବ । ତାର ସଂସାରି ବୋଲି କହିଲେ ସେ ଆଉ ତାର ସ୍ତ୍ରୀ । ଦୁଇଜଣ ଖଟନ୍ତି । ସେଥିରେ ଚଳିଯାନ୍ତି ।

ବର୍ଷାଭାବରୁ ବର୍ଷେ ଦୁର୍ଭିକ୍ଷ ପଡ଼ିଲା । ଫସଲ ସବୁ ଠିଆରେ ଠିଆରେ ବିଲରେ ଶୁଖିଗଲା । ଚାରିଆଡ଼େ ହାହାକାର । ମୂଲ

ମିଳିବା ସ୍ୱପ୍ନ । ବୃଷୀଟିର ଘରେ ଖୁଦ କଣାଟିଏ ବି ନାହିଁ । ବାଧ୍ୟ-ହୋଇ ସ୍ତ୍ରୀକୁ ଧରି ବୃଷୀଟି ସହରକୁ ବାହାରିଲା । ସେଠି ପେଟ ପୋଷିବା ତାର ଲକ୍ଷ୍ୟ ।

ସ୍ତ୍ରୀଟି ତାର ଅନ୍ତଃସତ୍ତ୍ୱା । ତେଣୁ ସାବଧାନତା ସହକାରେ ସେମାନେ ଯାତ୍ରା କରୁଥାନ୍ତି । କିନ୍ତୁ ବାଟରେ ପିଲାଟିଏ ହେଲା । ସେଇଟି ଗୋଟିଏ ପୁଅ । ପିଲାଟି ଦେଖିବାକୁ ଖୁବ୍ ସୁନ୍ଦର । ସଦ୍ୟଜାତ ଶିଶୁଟିକୁ ଧରି ସେମାନେ ସହରରେ ପହଞ୍ଚିଲେ । ସେଠି ରହିବାକୁ ଭଲ ଘରଟିଏ ଆଉ ପେଟ ପୋଷିବାକୁ ଭଲ ଚାକିରିଟିଏ ମିଳିଗଲା । ମାଲିକ ତାର ଜଣେ ତନ୍ତ । ଭଲ ମଣିଷଟିଏ । ତାକୁ ଠିକ୍ ଭାବରେ ମଜୁରି ଦିଅନ୍ତି । ନିଜର ଘର ଲୋକଭଳି ବ୍ୟବହାର କରନ୍ତି । ଜମା ଅବିଶ୍ୱାସ କରନ୍ତି ନାହିଁ । ତା'ପାଇଁ ଲାଭାଂଶରୁ କିଛି ପଇସା ଗଚ୍ଛିତ ରଖି ଦିଅନ୍ତି ।

ବୃଷୀଟି ଭାବେ, ଜୀବନଯାକ ସେ ଅଭାଗା । ସଂସାର ସୁଖ କ'ଣ ଜାଣି ନଥିଲା । ପୁଅଟି ଜନ୍ମ ପରେ ତାର ଭାଗ୍ୟ ବଦଳିଛି । ପୁଅଟି ତାର ଭାଗ୍ୟବନ୍ତ ।

ଦୁର୍ଭିକ୍ଷ ଚାଲିଗଲା । ଗାଁକୁ ଲୋକ ଫେରିଲେଣି । ବୃଷୀଟି ଏଥର ଘରକୁ ଫେରିବାକୁ ଇଚ୍ଛିଲା ।

ମାଲିକଙ୍କୁ ସେ ତାର ମନକଥା କହିଲା । ପ୍ରଥମେ ପ୍ରଥମେ ମାଲିକଟି ଅମଙ୍ଗ ହେଲା । ବୃଷୀଟିର ଜିଦ୍ ଦେଖି ରାଜି ହେବାଛଡ଼ା ଉପାୟ ତାର ନଥିଲା । ତା'ପରେ ମାଲିକ ତାର ହିସାବ ବୁଝାଇ-ଦେଇ ପ୍ରାପ୍ୟ ମଧ୍ୟ ଦେଇଦେଲା । ସେତିକ ଧରି ବୃଷୀଟି ଗାଁକୁ ବାହାରିଲା । ସାଥିରେ ତାର ସ୍ତ୍ରୀ ଆଉ ପୁଅ ।

ଚାଷୀ ଓ ତାର ସ୍ତ୍ରୀ ଖୁବ ହିସାବୀ । ଆୟରୁ ଦୁ'ପଇସା ସହରରେ ସଞ୍ଚୁଥିଲେ । ତନ୍ତ୍ରୀ ତାକୁ ଝଦା କଲାବେଳେ କିଛି ପଇସା ନ ଦେଲା । ସେ ଘରେ ଥୋଇଥିବା ସବୁତକ ପଇସା ଖଟାଇ ଖଣ୍ଡେ ଜମି କିଣିଦେଲା ।

ସ୍ୱାମୀ ସ୍ତ୍ରୀ ଖୁବ୍ ଖଟନ୍ତି । ରାତି ଦିନ ତାଙ୍କୁ ଅଣ୍ଟେ ନାହିଁ । ପାଗ ଅନୁକୂଳ ହେଲା । ଅଧିକ ଫସଲ ପାଇଲେ । ସବୁଥିରେ ତା'ର ଦୁ'ପଇସା ଲାଭ ହେଲା । ଅଳ୍ପଦିନ ଭିତରେ ସେ ଜଣେ ଧନବନ୍ତ ହୋଇଗଲା ।

ପୁଅଟି ବଡ ହୋଇଗଲାଣି । ଦେଖିବାକୁ ସୁନ୍ଦର । ସ୍ୱାସ୍ଥ୍ୟବାନ । କର୍ମଠ । ବୁଦ୍ଧିମାନ । ବାହା ହବାର ବୟସ ବି ହୋଇଗଲାଣି ।

ସେତେବେଳେ ଜମିଦାରମାନଙ୍କର ପ୍ରତିପତ୍ତି ବହୁତ ଥିଲା । ସେଥିପାଇଁ ଚାଷୀଟି ପୁଅକୁ ଜଣେ ଜମିଦାର ଘରେ ବିବାହ କରିବାକୁ ଆଗ୍ରହୀ ।

ଜମିଦାରମାନଙ୍କର ଭାରି ଗର୍ବ । ଚଷାମାନଙ୍କୁ ସେମାନେ ପାସଙ୍ଗରେ ବି ପକାନ୍ତି ନାହିଁ । ପଡ଼ୋଶୀ ଜମିଦାରମାନେ ଚାଷୀଟି ଘରେ ଝିଅ ଦେବାକୁ ରାଜି ହେଲେ ନାହିଁ । ତେଣୁ ଚାଷୀଟିକୁ ଦୂରକୁ ଯିବାକୁ ପଡ଼ିଲା । ଶେଷରେ ଜଣେ ଦୂର ଜମିଦାର ଚାଷୀ ଘରେ ବନ୍ଧୁ ବାନ୍ଧିବାକୁ ରାଜି ହେଲେ । ଖୁବ୍ ଜାକଜମକରେ ବିବାହ ହୋଇଗଲା ।

ଚାଷୀଟି ଭାରି ଖୁସି । ଗୋଡ଼ ଏଠି ହେଲେ ସେଠି ପଡ଼ୁଥାଏ । ବୋହୂକୁ କିପରି ଖୁବ୍ ଆରାମରେ ରଖିବ, ସେଥିପାଇଁ ସେ ବ୍ୟସ୍ତ । ହଠାତ୍ ଚାଷୀଟି ମରିଗଲା । ଘରଆଡ଼େ ଶୋକର ଛାଇ । ଚାଷୀଟିର ସ୍ତ୍ରୀ ସମ୍ପତ୍ତିବାଡ଼ି ବୁଝେ ନାହିଁ । ପୁଅଟିର ଘର ଚଳାଇବାର

ସାମର୍ଥ୍ୟ ଆସିନାହିଁ । ସମ୍ପତ୍ତି ତ ବହୁତ । ଘର ଚଳାଇବାକୁ ହେବ । ସେଥିପାଇଁ ବୃଦ୍ଧୀର ସ୍ତ୍ରୀ ଭାଇ ସମୁଦ୍ର ପାଖକୁ ଖବର ପଠାଇଲା ।

ଜମିଦାର ଖବର ପାଇ ବ୍ୟସ୍ତବ୍ୟସ୍ତ ହୋଇପଡ଼ିଲେ । କିଛି ଗୋଟାଏ ବ୍ୟବସ୍ଥା କରିବାକୁ ସେ ବ୍ୟାକୁଳ । ଅନୁକୂଳ କିଛି ପାଉ ନ ଥାନ୍ତି । ସ୍ତ୍ରୀ ସାଙ୍ଗରେ ପରାମର୍ଶ କଲେ । ସ୍ତ୍ରୀକୁ କହିଲେ—"ଦେଖ, ସେଠି ଆମେ ଝିଅକୁ ଦେବାକୁ ସତ୍ୟ କରିଛେ । ବାପ ମରିଗଲା ବୋଲି ପ୍ରସ୍ତାବ ଭାଙ୍ଗିବା ପ୍ରଶ୍ନ ଉଠୁନାହିଁ । ସେଠି ବିବାହ ଦେବାକୁ ହେବ । କିନ୍ତୁ ପିଲାଟି ଅଳ୍ପ ବୟସର । ଅଚଳାଚଳ ସମ୍ପତ୍ତି । ତାକୁ ଆକଟ କରିବାକୁ କେହି ନାହିଁ । ଖଳ ଲୋକ ଜୁଟିବେ । ତୋଷାମଦ ସେମାନଙ୍କର ସର୍ବସ୍ୱ । ନମ୍ବ ପଥରେ ମନ୍ଦ ବୋଲି ଚଟାଇବେ । କହିବେ, ଏହା ନମ୍ବ ପଥର ସ୍ୱାଦ । ପିଲା ଲୋକ ତ ! ବାରିପାରିବ ନାହିଁ । ଭ୍ରମ ହେବା ସ୍ୱାଭାବିକ । ଅବାଟକୁ ଆସିଯିବ । ଫଳରେ ଆମ ଝିଅର ଭବିଷ୍ୟତ ଅନ୍ଧକାର ହେବ । ଡେରି କରି ଲାଭ ନାହିଁ । ପିଲାଟିକୁ ଘେନ ଆସିବା । ବିବାହ ପର୍ଯ୍ୟନ୍ତ ଆମ ଘରେ ରଖିବା । ଆମ ଲୋକ ସମ୍ପତ୍ତି ଦେଖାଶୁଣା କରିବେ ।"

ସ୍ତ୍ରୀ କିନ୍ତୁ ରାଜି ହେଲେ ନାହିଁ । କହିଲେ—"ଯେତେ ଜବାବ ଦେଲେ କ'ଣ ହେବ, ବାହା ନ ହେବା ପର୍ଯ୍ୟନ୍ତ ସେ ପର ପୁଅ । ଆମ ସାଥିରେ ସମ୍ବନ୍ଧ କିଛି ନାହିଁ । ତେଣୁ ସେ ଆମ ଅକ୍ତିଆରର ବାହାରେ । ପର ପୁଅକୁ ଘରେ ରଖିଲେ, ଲୋକେ ବାର କଥା କହିବେ । କାହା ତୁଣ୍ଡରେ ଆମେ ବାଡ଼ବତା ଦେବା ନାହିଁ । ଝିଅର ଶେଷକୁ ବଦନାମ ହେବ । ତା'ଛଡ଼ା ଭୁଲ ବୁଝାମଣା ବି ହୋଇ-ପାରେ । ପୁଅ ଝିଅଙ୍କର ତ ବୟସ ହୋଇଯାଇଛି । ଶୀଘ୍ର ବିବାହ

କରିଅଛି । ତାହାହେଲେ ସେମାନେ ଏକାଠି ରହିବେ । ସ୍ତ୍ରୀ ପର ପରମ ବନ୍ଧୁ ସଂସାରରେ କେହି ନାହିଁ । ଏକାଠି ରହିଲେ ମନ ମିଳିବ । କେହି କାହାକୁ ଛାଡ଼ିବେ ନାହିଁ । ଖଳ ଲୋକେ ଆପେ ଆପେ ଦୂରେଇ ଯିବେ । ସ୍ତ୍ରୀମାନେ ସାଧାରଣତଃ ସନ୍ଦେହୀ । ଚତୁର । ଅନ୍ୟମାନଙ୍କଠାରୁ ଦୂରରେ ରହନ୍ତି । ତୋଷାମଦକାରୀଙ୍କୁ ପାଖରେ ପୂରାଇ ଦିଅନ୍ତି ନାହିଁ । ତା ଛଡ଼ା ବିବାହ ପରେ ସେ ଆମ ଜ୍ୱାଇଁ । ଆମର କଥାର ଓଜନ ରହିବ । ଆମେ ଆକଟ କରିପାରିବା । ଲୋକେ ବି କିଛି କହିପାରିବେ ନାହିଁ । ଆମ କଥାକୁ ସେ ତଳେ ପକାଇବ ନାହିଁ ।”

ସ୍ତ୍ରୀର କଥା ଜମିଦାରଙ୍କ ମନକୁ ବେଶ୍ ପାଇଲା । ଡେରି ଆଉ ସେ କଲେ ନାହିଁ । ବିବାହ ଦିନ ସ୍ଥିର କରି ବୃଷୀ ଘରକୁ ଖବର ପଠାଇ ଦେଲେ ।

ବୃଷୀର ସ୍ତ୍ରୀ ଖବର ପାଇ ବହୁତ କାନ୍ଦିଲା । ସେ ଭାବୁଥାଏ— ସ୍ୱାମୀ ଯଦି ଚାର ଥାଆନ୍ତେ, ବାହାଘର ଦିନ ସ୍ଥିର ହେବା ଶୁଣି ଗୋଡ ତାଙ୍କର ତଳେ ଲାଗୁନଥାନ୍ତା । ସ୍ୱାମୀ କଥା ମନେ ପକାଇ ଧାର ଧାର ହୋଇ ଲୁହ ତାର ବୋହି ଯାଉଥାଏ । ସେଇ ଦୁଃଖ ଭିତରେ ସେ ବିବାହର ଯାହାକିଛି ଆୟୋଜନ କରି ପୁଅକୁ ବର ବେଶ କରି ପଠାଇ ଦେଲା ।

କନ୍ୟା ଘର ତ ବହୁ ଦୂର । ବରଯାତ୍ରୀ ସଂଖ୍ୟା ମଧ୍ୟ କମ୍ । ସମସ୍ତେ ଅଶ୍ୱାରୋହୀ । ବାଟରେ ଗୋଟିଏ ବଣ ପଡ଼େ । ସେଇଠି ଗୋଟେ ଗଛମୂଳେ ବର ବିଶ୍ରାମ ନେଲା । ବରଯାତ୍ରୀମାନେ ଟିକିଏ ଆଗେଇଗଲେ । ବରଟି ବିଶ୍ରାମ ନେବାବସ୍ଥାରେ ଗୋଟିଏ ସାପର ଭୟଙ୍କର ଗର୍ଜ୍ଜନ ଶୁଣିଲା । ସେ ଉଠି ଯାଇ ଦେଖିଲା ଦେ

ଗୋଟିଏ ସାପ ଆଉ ଗୋଟିଏ ନେଉଳ ଯୁଦ୍ଧରେ ବ୍ୟସ୍ତ । ବାରମ୍ବାର ନେଉଳର ଆଘାତରେ ସାପଟି ଉତ୍ତ୍ୟକ୍ତ । ପ୍ରାଣବକଳରେ ଖାଲି ଗର୍ଜୁଛି । ସାପଟିକୁ ଦେଖି ବରଟି ମନରେ ଦୟା ହେଲା । ଏଡିକି ବେଳେ ତାର ବାପାଙ୍କ କଥା ମନେ ପଡ଼ିଲା । ସେ କହୁଥିଲେ, "ଝଗଡ଼ା ଛଡ଼ାଇବା ଏକ ପୁଣ୍ୟ କାମ ।" ସେ ନେଉଳ ଓ ସାପ ପାଖକୁ ଗଲା । ସେମାନଙ୍କୁ ଯୁଦ୍ଧ ନ କରିବାକୁ ବାରମ୍ବାର ଅନୁରୋଧ କଲା । ସେମାନେ ତା'କଥା ମାନିଲେ ନାହିଁ । ଖଣ୍ଡା ଅଗରେ ସେମାନଙ୍କୁ ସେ ଅଲଗା କରିଦେଲା । ନେଉଳ ତଥାପି ବି ଚୁପ୍ ରହିଲା ନାହିଁ । ଯେତେଥର ତାକୁ ସେ ଅଲଗା କରେ, ସେତେଥର ସେ ପୁଣି ସାପ ଉପରକୁ କମ୍ପ ଦେଇ ଆକ୍ରମଣ କରେ । ବରଟି ଦେଖିଲା, ସାପଟି ଆଉ ପାରୁନାହିଁ । ନେଉଳ ତାକୁ କାବୁ କରି ସାରିଲାଣି । ଏଇପରି ଅବସ୍ଥାରେ ଛାଡ଼ିଦେଲେ, ନେଉଳ ସାପଟିକୁ ମାରିଦେବ । ଶେଷଥର ପାଇଁ ନେଉଳକୁ ସେ ଅନୁରୋଧ କଲା । ନେଉଳ ତଥାପି ତା' କଥା ଶୁଣିଲା ନାହିଁ । ଶେଷକୁ ସେ ଖଣ୍ଡାରେ ନେଉଳର ମୁଣ୍ଡ ତା ଦେହରୁ ଅଲଗା କରିଦେଲା । ତା'ପରେ ଘୋଡ଼ାରେ ଚଢ଼ି ଶ୍ୱଶୁରଘର ଅଭିମୁଖେ ବାହାରିଲା ।

କିଛି ବାଟ ପରେ ସେ ପଛରୁ ସାପ ଗର୍ଜନ ଶୁଣି ଅଟକି ଗଲା । ଦେଖିଲା କ୍ଷତ ବିକ୍ଷତ ଏକ ସାପ ତା ପଛେ ପଛେ ଖୁବ୍ ଜୋର୍‌ରେ ଧାଇଁଛି । ସାପଟି ତାକୁ ଦେଖି ସେଇଠି ରହିଲା । ବରଟି ଦେଖିଲା—ସେ ଅଳ୍ପ ସମୟ ତଳେ ଯେଉଁ ସାପର ଜୀବନ ରକ୍ଷିଥିଲା, ସେଇ ସେ ସାପ । ବରଟି ତାକୁ ପଚାରିଲା—"ତୁ ତ କ୍ଷତ ବିକ୍ଷତ । ବିଶ୍ରାମ ନ କରି କର୍ଜିକରି କୁଆଡ଼େ ଯାଉଛୁ ?"

ସାପଟି କହିଲା—"ଯେ ଉପକାର କରେ, ତାର ଅପକାର କରିବାକୁ ହେବ । ଆମ ଅଞ୍ଚଳରେ ଏଇଟି ଗୋଟିଏ ପ୍ରଥା । ତୁମେ ମୋ ଜୀବନ ରଖିଛ । ତେଣୁ ମୁଁ ତୁମକୁ ଦଂଶନ କରିବାର କଥା ।"

ବରଟି ଯେତେ ବୁଝାଇଲା, ସାପଟି ବୁଝିଲା ନାହିଁ । ବରଂ ଦଂଶନ କରିବାକୁ ଉଦ୍ୟତ ହେଲା ।

ବରଟି ଦେଖିଲା, ପ୍ରତିବାଦ କରି ଲାଭ ନାହିଁ । ତେଣୁ କହିଲା—"ମୁଁ ବିବାହ କରିବାକୁ ଯାଉଛି । କନ୍ୟା ମଙ୍ଗୁଳା ହୋଇ ସାରିବଣି । ଏ ଅବସ୍ଥାରେ ବାହାଘର ଭାଙ୍ଗିଗଲେ ମଙ୍ଗୁଳା କନ୍ୟାକୁ କେହି ବିବାହ କରିବେ ନାହିଁ । ଯଦି ତୁ ମୋତେ ଦଂଶନ କରୁ, କନ୍ୟାଟି ଆଉ ବାହା ହୋଇ ପାରିବ ନାହିଁ । ତା ଜୀବନ ନଷ୍ଟ ହୋଇଯିବ । ମୁଁ ଯାଏ, ବିବାହ କାମ ଛିଣ୍ଡାଏ । ଆଠଦିନ ପରେ ଏଇ ବାଟେ ଆସିବି । ସେତେବେଳେ ତୁ ମୋତେ ଦଂଶନ କରିବୁ ।"

ସାପଟି ବରର କଥାରେ ରାଜି ହୋଇ ଫେରିଗଲା । ଗଲାବେଳେ କହିଗଲା, ଯେଉଁ ଗଛମୂଳରେ ନେଉଳ ତାକୁ ଆକ୍ରମଣ କରୁଥିଲା, ସେଇଠି ଗୋଟିଏ ବଡ଼ ବୁଙ୍କା ଅଛି । ତା'ର ଭିତରେ ସେ ରହେ ।

ବରଟି ଆଉ ଡେରି କଲା ନାହିଁ । ଶ୍ୱଶୁରଘର ଅଭିମୁଖେ ଘୋଡ଼ାଟି ଝପଟାଇ ଦେଲା ।

ଆଗରୁ ସମସ୍ତେ ପ୍ରସ୍ତୁତ । ପହଞ୍ଚିବାମାତ୍ରେ ବାହାଘର ସୁରୁଖୁରୁରେ ସମାପନ ହୋଇଗଲା ।

ଏ ବାହାଘରରେ ସମସ୍ତେ ଖୁସି । କିନ୍ତୁ ବରର ମନରେ ସୁଖ ନ ଥାଏ । ସେ ସର୍ବଦା ଚିନ୍ତିତ । ଏ କଥା ଶାଶୁ ଶ୍ୱଶୁର

ଲକ୍ଷ୍ୟ କରୁଥାନ୍ତି । ଭାବିଲେ, ବାପର ଏକମାତ୍ର ପୁଅ । ବାପ ଖୁବ୍ ସ୍ନେହ କରୁଥିବ । ବିବାହ ଠିକ୍ କରିଥିଲା । ଜାକଜମକରେ ବିବାହ କରିଥାନ୍ତା । ଅଥଚ ବିବାହକୁ ବାପ ରହିଲା ନାହିଁ । ସେଥିପାଇଁ ପୁଅର ମନରେ ଦୁଃଖ । ପଚାରିଲେ ବେଶି ମନକଷ୍ଟ କରିବ । ତେଣୁ କେହି କିଛି ପଚାରିଲେ ନାହିଁ ।

ଅଷ୍ଟମ ଦିନ । ଝିଅ ଜ୍ୱାଇଁକୁ ଜମିଦାର ବିଦା କରିଦେଲେ । ଆଗଭଳି ଯାନଯୌତୁକ ବରଯାତ୍ରୀ ସାଥିରେ ପଠାଇ ଦେଇଥିଲେ ।

ବର କନ୍ୟା ଦୁଇଜଣ ଫେରୁଥାନ୍ତି । ସାଥିରେ ଆଉ କେହି ନାହିଁ । ବାଟରେ ବଣ ପଡ଼ିଲା । ସେମାନେ ଆସି ସାପ ରହୁଥିବା ଗଛ ପାଖରେ ପହଞ୍ଚିଗଲେ । ସେଠି ବରଟି କନ୍ୟାକୁ କହିଲା, "ମୋର ଆଜ ମୃତ୍ୟୁ ଦିବସ । ମୁଁ ଏଠି ମରିବି । ତୁମେ ଘରକୁ ଚାଲିଯାଅ । ଭଲରେ ରହିବ ।"

ସ୍ତ୍ରୀଟି କହିଲା—"ତୁମେ ମଲା ପରେ ମୁଁ ତ ବିଧବା ହୋଇଯିବି । ତା'ପରେ ମୋତେ ସମସ୍ତେ ଅମଙ୍ଗଳର ପ୍ରତୀକ ବୋଲି କହିବେ । ଛି ଛୁକର କରିବେ । ଜୀବନ ଦୁର୍ବିସହ ହୋଇ ଉଠିବ । ସେପରି ବଞ୍ଚିବା ଅପେକ୍ଷା ମୃତ୍ୟୁ ଶତଗୁଣରେ ଭଲ । ତେଣୁ ମୁଁ ତମକୁ ଛାଡ଼ିବି ନାହିଁ । ତୁମେ ଯୁଆଡ଼େ ଯିବ, ମୁଁ ଯିବି ।"

ସ୍ତ୍ରୀକୁ ସେ ବହୁତ ବୁଝାଇଲା । ସ୍ତ୍ରୀ କିନ୍ତୁ ରାଜି ହେଲାନାହିଁ । ବାଧ୍ୟ ହୋଇ ସେ ସାପ ଗାତ ପାଖକୁ ଗଲା । ସାଥିରେ ବି ସ୍ତ୍ରୀ ଯାଇଥାଏ । ସେଠି ଗାତ ପାଖରେ ସେ କହିଲା—"ସର୍ପରାଜ ! ମୁଁ ମୋ କଥା ରଖି ଆସିଛି । ତୁମେ ମୋତେ ଦଂଶନ କରିପାର ।"

ନିମିଷକ ଭିତରେ ଏକ ବିରାଟ ସାପ ସୁ ସୁ ଶବ୍ଦ କରି ସେଠି ହାଜର ହୋଇଗଲେ । ତା'ପରେ ସେ ଫଣା ଟେକି ବରକୁ ଦଂଶନ କରିବାକୁ ଉଦ୍ୟତ ହେଲେ ।

କନ୍ୟାଟି ପ୍ରଥମେ ସାପକୁ ଦେଖି ଡରିଯାଇଥିଲେ । ସାପର ଆକ୍ରମଣ ଭାବ ଦେଖି ପଚାରିଲେ—"ମୋ ସ୍ୱାମୀ ତମର କ'ଣ ଦୋଷ କରିଛନ୍ତି ଯେ ତାଙ୍କୁ ତମେ ଦଂଶନ କରିବ ?"

ସାପଟି ତାର ନେଉଳ ସାଥିରେ ଯୁଦ୍ଧଠୁଁ ଆରମ୍ଭ କରି କପରି ବର ତା'ର ପ୍ରାଣ ରଖିଲା, ସେ କଥାକୁ ଗୋଟି ଗୋଟି କରି ବର୍ଣ୍ଣନା କଲା । ତା'ପରେ କହିଲା—"ଆମ ଅଞ୍ଚଳରେ ଗୋଟିଏ ପ୍ରଥା ଅଛି । ଯେ ଯାହାର ଉପକାର କରିବ, ପ୍ରତିଦାନରେ ତାର ଅପକାର କରିବାକୁ ହେବ । ଯେହେତୁ ତମର ସ୍ୱାମୀ ମୋର ଜୀବନ ରକ୍ଷା କରିଛନ୍ତି, ମୁଁ ତାଙ୍କୁ ଦଂଶନ କରି ତାଙ୍କର ଜୀବନ ନେବି ।"

କନ୍ୟାଟି କହିଲା—"ତୁମେ ଯାହା କହୁଚ, ତା ମନକୁ ଆସୁନାହିଁ । ଏହା ଏକ ଅଯୌକ୍ତିକ ଓ ଅନୈତିକ କଥା । ଗ୍ରହଣ ସମ୍ଭାବ୍ୟ ଅତି କମ୍ । ମୋର ସ୍ୱାମୀକୁ ମାରିବାକୁ ଏ ପ୍ରଥାଟି ତମେ ମନରୁ ଗଢ଼ିଛ ।"

ସାପଟି କହିଲା—"ମୋର ମନ ଗଢ଼ା କଥା ଏହା କାହିଁକି ହେବ ? ଆମ ଅଞ୍ଚଳରେ ସମସ୍ତେ ଏ କଥା ମାନନ୍ତି । ଏଇ ଯେଉଁ ପାଞ୍ଚୋଟି ଗଛ ଦେଖୁଛ, ତାଙ୍କୁ ପଚାର । ସେମାନେ ଯଦି ମୋ କଥାକୁ ସମର୍ଥନ ନ କରିବେ, ମୁଁ ଆପେ ଆପେ ଚାଲିଯିବି ।"

କନ୍ୟାଟି ଗଛମାନଙ୍କ ପାଖକୁ ଗଲା । ତାଙ୍କୁ ସାପ କହିଥିବା ପ୍ରଥା ସମ୍ପର୍କରେ ପଚାରିଲା ।

ମଣ୍ଟି ଗଛଟି ମଣିଷ ଭଳି କହିଲା—"ଏଇନେ ତୁମ୍ଭେ ପାଞ୍ଚୋଟି ଶିଶୁ ଗଛ ଦେଖୁଛ । ଆଗେ ଆମେ ଛ'ଟି ଗଛ ଥିଲୁ । ଶେଷଟି ସବୁଠାରୁ ବଡ଼ । ସେଥିରେ ଗୋଟିଏ ବଡ଼ କୋରଡ଼ ଥିଲା । ଅନାୟାସରେ ଜଣେ ଲୋକ ତା ଭିତରେ ଲୁଚି ରହି ପାରୁଥିଲା ।

ବହୁଦିନ ତଳେ ପାଖ ଗାଁରେ ଚୋରଟିଏ ସହରରେ ଚୋରି କରୁଥିଲା । ସେଦିନ ଶୁକ୍ଳ ପକ୍ଷ । ଜହ୍ନ ଫୁଲ ପରି ଶୁକ୍ଳ ଆଲୁଅ । ସବୁ ଦାଉ ହୋଇ ଯାଉଥାଏ । ଲୋକେ ଚୋରକୁ ଦେଖିଲେ । ପ୍ରାଣ ଭୟରେ ସେ ପଳାଇ ଆସିଲା । ପଛେ ପଛେ ଗାଁବାଲା ଠେଙ୍ଗା ବାଡ଼ି ଧରି ଧାଉଁଥାନ୍ତି । ଚୋରଟି ଭୟରେ ଥରୁଥାଏ । ସେ ଜାଣେ, ଧରା ପଡ଼ିଲେ, ଲୋକେ ତାକୁ ପିଟି ପିଟି ମାରିଦେବେ । ବଞ୍ଚିବାର ଆଶା କମ୍ । ସେ ବଡ଼ ଗଛ ପାଖକୁ ଆସି କୋରଡ଼ଟି ଦେଖିଲା । ତା ଭିତରେ ପଶିଗଲା । ଅନୁନୟ କରି କହିଲା—ବୃକ୍ଷରାଜ, ମୁଁ ଆପଣଙ୍କର ଶରଣାପନ୍ନ । ଲୋକେ ମୋତେ ଦେଖିଲେ, ଧରିନେବେ । ପିଟି ପିଟି ମାରିଦେବେ । ମୋତେ ରକ୍ଷା ନକଲେ, ମୃତ୍ୟୁ ମୋର ଅନିବାର୍ଯ୍ୟ ।"

ଗଛଟି ଭାବିଲା, ଲୋକଟିର କଥା ଏକାନ୍ତ ସତ୍ୟ । ସେ ଯଦି ତାକୁ ରକ୍ଷା ନ କରେ, ତାର ବଞ୍ଚିବାର ଆଶା ନାହିଁ । ସାଥି ସାଥି ସେ କୋରଡ଼ଟି ବନ୍ଦ କରିଦେଲା । ଲୋକେ ଗଛ ପାଖକୁ ଆସିଲେ । ଗଛ ଚାରିପଟେ ବୁଲିଲେ । ଜହ୍ନ ଆଲୁଅରେ ସବୁ ପରିଷ୍କାର ଦେଖା ଯାଉଥାଏ । ଚୋର ନାଁ ଗନ୍ଧ ବି ପାଇଲେ ନାହିଁ । ବାଧ୍ୟହୋଇ ଫେରିଗଲେ ।

ଦିନ ହେବାରୁ କୋରଡ଼ ମେଲା ହୋଇଗଲା । ଚୋରଟି କୋରଡ଼ରୁ ବାହାରି ଗାଁକୁ ଚାଲିଲା ।

ଶିଶୁଟିର ପନ୍ଦର ବର୍ଷରେ ହେଲେ, ଚନ୍ଦନ ଫାଲଟିଯାଏ । ବଡ଼ ଗଛଟି ଶହେ ବର୍ଷର । ତା ଦେହରୁ ଚନ୍ଦନ ବାସ୍ନା ବାହାରୁଥାଏ । ଲୋକଟି କୋରଡ଼ରେ ଥିଲା । ତାର ଦେହ ଗଛଟରେ ଲାଗିଥିଲା । ପୁଣି ରାତସାରା । ସେଥିପାଇଁ ତା ଦେହରୁ ମହମହ ଚନ୍ଦନ ବାସ୍ନା ବାହାରୁଥାଏ ।

ଗାଁ ବାଟରେ ରାଜଧାନୀ । ଚୋରଟି ରାଜଧାନୀରେ ଯିବାବେଳେ, ଲୋକେ ତାକୁ ଅନାନ୍ତି । ତା ବାସ୍ନାରେ ସମସ୍ତେ ମୁଗ୍ଧ । ରାଜ-କର୍ମଚାରୀଟି ଚୋରକୁ ଦେଖିଲା । ସେ ଭାବିଲା, ଚୋରଟି ଦାମୀ ଅତର ଲଗାଇଛି । ସେଇ ଅତର ପାଇଁ ତାର ଲୋଭ ହେଲା । ଚୋରକୁ ଅଟକାଇ କି ଅତର ଲଗାଇଛି, ସେ କଥା ପଚାରିଲା ।

ଚୋରଟି ଏ ପର୍ଯ୍ୟନ୍ତ ତା ଦେହରୁ ବାସ୍ନା ବାହାରୁଥିବା କଥା ଜାଣି ନ ଥିଲା । ରାଜ କର୍ମଚାରୀ କଥାରେ ସେ ଅବାକ୍ । ତା'ର ନୀରବତା ଦେଖି ରାଜ କର୍ମଚାରୀ କ୍ଷୁବ୍ଧ । ତାକୁ ଅଟକାଇ ରାଜାଙ୍କ ପାଖକୁ ଖବର ପଠାଇଲା ।

ରାଜାଙ୍କ ଆଦେଶରେ ଚୋରକୁ ତାଙ୍କ ଆଗରେ ହାଜର କରାଗଲା । ତା ଦେହରୁ ବାହାରୁଥିବା ବାସ୍ନାରେ ରାଜା ମଧ୍ୟ ମୁଗ୍ଧ । ସେ ଦେହରେ କ'ଣ ଲଗାଇଛି, ସେ କଥା ରାଜା ଜାଣିବାକୁ ଚାହିଁଲେ ।

ଚୋରଟି କହିଲା—"ମହାରାଜ, ମୁଣ୍ଡ ରହିଲେ ଭୁଣ୍ଡ ଖୋଲିବ ।"

ରାଜା ସମ୍ମତି ଜଣାଇଲେ । ଚୋରଟି କହିଲା – "ମହାରାଜ, କାଲି ରାତିରେ ମୁଁ ଚୋରି କରୁଥିଲି । ଲୋକେ ଦେଖିଲେ । ମୁଁ ପ୍ରାଣ ଭୟରେ ପଳାଇ ଆସିଲି । ଲୋକେ ଘୋଡେ ଗୋଡ଼ାଇଥାନ୍ତି । ମୁଁ

ଉପାୟ ପାଇଲା ନାହିଁ । ଦେଖିଲା, ଗୋଟିଏ ଶିଶୁ ଗଛରେ କୋରଡ଼ ଅଛି । ତା ଭିତରେ ଲୁଚିଗଲା । ବୃକ୍ଷରାଜଙ୍କୁ ମୋତେ ରକ୍ଷା କରିବାକୁ ଅନୁନୟ କଲି । କୋରଡ଼ ବନ୍ଦ ହୋଇଗଲା । ଲୋକମାନେ ମୋତେ ନ ଦେଖି ଫେରିଗଲେ । ସକାଳ ହେବାରୁ କୋରଡ଼ ଖୋଲିଗଲା । ମୁଁ ସେଠୁ ବାହାରି ଘରକୁ ଯାଉଥିଲି । ରାଜକର୍ମଚାରୀ କହିଲେ—ମୋ ଦେହ ବାସୁଛି । କାରଣ ପଚାରିଲେ । ଏଇ କଥା କହିଲି । ସେ ବିଶ୍ୱାସ କଲେ ନାହିଁ । ତୁମ୍ଭଙ୍କ ପାଖରେ ହାଜର କରାଇଲେ ।”

ରାଜା ଭାବିଲେ, ଏ ଲୋକର କଥାରେ ସତ୍ୟତା ଥାଇପାରେ । ଦଣ୍ଡ ଦେବା ପୂର୍ବରୁ, କଥାଟା କେତେଦୂର ସତ୍ୟ ତାହା ପରୀକ୍ଷା କରାଯାଉ । ଚୋରକୁ ଅଟକାଇ ରଖିବାକୁ ଆଦେଶ ଦେଇ ନିଜେ ଶିଶୁ ଗଛ ପାଖକୁ ଗଲେ ।

କୋରଡ଼ ମନ୍ଦ ମନ୍ଦ ହୋଇ ବାସୁଥିବାର ଦେଖି, ରାଜା ଖୁସି ହୋଇଗଲେ । ସେଇଠାରେ ଗଛଟିକୁ କାଟି ଉଆସକୁ ଆଣିବାକୁ ଆଦେଶ ଦେଲେ ।

ଗଛଟି କାନ୍ଦି କାନ୍ଦି ତାକୁ ନ କାଟିବାକୁ ଗୁହାରି କରିଥିଲା । ରାଜା କିନ୍ତୁ ଶୁଣିଲେ ନାହିଁ । ଶେଷକୁ ସେ କ୍ଷୁବ୍ଧ ହୋଇ କହିଥିଲା—ଭଲ କାମ କଲି, ପରର ପ୍ରାଣ ରଖିଲି । ତା ବଦଳରେ ମନ୍ଦ ଫଳ ପାଇଲି । ପ୍ରାଣ ଦେଲି । ଏହା କ’ଣ ଏ ରାଜ୍ୟର ନୀତି । ରାଜା ନିରୁତ୍ତର । ମୌନ ରହିଲେ ସମ୍ମତି ଥିବାର ଜଣାଯାଏ । ତେଣୁ ସେଇ ବୃକ୍ଷର ଶେଷକଥା ହିଁ ରାଜାର ଆଦେଶ ବୋଲି ଧରାଗଲା । ସେହିଦିନୁ ଭଲ କାମ କଲେ ମନ୍ଦ ଫଳ ଭୋଗିବାକୁ ହୁଏ, ଏହା ହେଉଛି ଆମର ଏଠାକାର ନିୟମ ।

କନ୍ୟାଟି ଶୁଣିଲା । କହିଲା, "ସ୍ୱାମୀଙ୍କୁ ରକ୍ଷା କରିବା ପାଇଁ ବୃକ୍ଷରାଜ ତ ଦଣ୍ଡ ପାଇନାହାନ୍ତି । ତାଙ୍କ ଦେହରୁ ବାହାରୁଥିବା ବାସ୍ନା ଯୋଗୁ ତାଙ୍କୁ କଷ୍ଟ ହୋଇଛି । ସ୍ୱାମୀଙ୍କୁ ଲୁଚାଇ ନ ରଖିଥିଲେ ବି ତାଙ୍କୁ କାଟି ନଥା ହୋଇଥାନ୍ତା ।"

ବୃକ୍ଷ କି ସର୍ପ କେହି କନ୍ୟାଟିର କଥା ଗ୍ରହଣ କଲେ ନାହିଁ । ବରଂ ସର୍ପଟି କହିଲା—"ଶୀଘ୍ର ଛେଳର କାହାଣୀ ତ ଶୁଣିଲ । ରାଜାଙ୍କ ଆଦେଶ ଆମର ଶିରୋଧାର୍ଯ୍ୟ । ତାହା ହିଁ ଲୋକ ମତ ।" ମୁଁ ତାକୁ ହିଁ ପାଳନ କରୁଛି ।"

କନ୍ୟାଟି ଦେଖିଲା, ସର୍ପଟି ତା ମତରେ ଦୃଢ଼ । ପ୍ରତିବାଦ କରି ଲାଭ ନାହିଁ । ତାକୁ ଆକାଶରୁ ପଡ଼ିଲା ଭଳି ଲାଗିଲା । ଆଖିରୁ ତାର ଧାର ଧାର ହୋଇ ଲୁହ ବୋହି ଯାଉଥାଏ । ସେ କିଂକର୍ତ୍ତବ୍ୟ-ବିମୂଢ଼ା । ମନେ ମନେ ଭାବୁଥାଏ—ମୁହୂର୍ତ୍ତକ ପରେ ସର୍ପ ଦଂଶନରେ ତାର ସ୍ୱାମୀ ଆଉ ସଂସାରକୁ ଚାଲିଯିବେ । ସେ ହେବ ବିଧବା । ସାରା ଜୀବନ ତାର ହା ହୁତାଶରେ ଜଳି ପୋଡ଼ି ନଷ୍ଟ ହୋଇଯିବ ।

ଏପଟେ ସାପ ଆସ୍ତେ ଆସ୍ତେ ତାର ସ୍ୱାମୀ ପାଖକୁ ଆଗେଇ ଆସୁଥାଏ । ହଠାତ୍ କନ୍ୟାଟି ସାପ ଆଗକୁ ଡେଇଁ ପଡ଼ିଲା । କହିଲା, "ସ୍ୱାମୀ ବିନା ମୋର ଜୀବନ ହେବ ମୂଲ୍ୟହୀନ । ଦୁର୍ବିଷହ । ସେ ମରିବା ପୂର୍ବରୁ ମୋର ମୃତ୍ୟୁ ହେବା ଆବଶ୍ୟକ । ହେ ସର୍ପରାଜ ! ମୋତେ ଆଗ ଦଂଶନ କର । ମୋର ମୃତ୍ୟୁ ପରେ ମୋର ସ୍ୱାମୀଙ୍କୁ ଦଂଶନ କରିବ ।"

ସାପଟି କହିଲା—"ତୁମେ ମୋର କିଛି ଉପକାର କରିନାହଁ । ତେଣୁ ତମକୁ ଦଂଶନ କରି ତମର ଅମଙ୍ଗଳ କରିପାରିବି ନାହିଁ ।"

କନ୍ୟାଟି କହିଲା—"ତୁମର କଥା ଯଦି ସତ୍ୟହୁଏ, ସ୍ୱାମୀ ମୋର ମରିଗଲେ ମୋର ଅଶେଷ ଅମଙ୍ଗଳ ହେବ। ତା'ଛଡ଼ା ସ୍ୱାମୀର ମୁଁ ଅର୍ଦ୍ଧାଙ୍ଗିନୀ। ତାକୁ ଦଂଶନ କଲେ ମୋର ଦେହ ବିଷାକ୍ତ ହୋଇଯିବ ! ମୁଁ ତ ତମର ଉପକାର କରିନାହିଁ। ତୁମେ ମୋତେ ଜଳାଇ ପୋଡ଼ାଇ ମାରିବ କାହିଁକି ?"

ସାପଟି ଭାବିଲା, କନ୍ୟାଟିର କଥା ଯୁକ୍ତିଯୁକ୍ତ। ବରକୁ ଦଂଶନ କରିବା ଯଦିଓ ତାର କର୍ତ୍ତବ୍ୟ, ତଥାପି ବିନା କାରଣରେ କନ୍ୟାଟିର କ୍ଷତି କରିବାଟା ତାର ଅନ୍ୟାୟ। ସେ ଟିକିଏ ଅଟକିଗଲା। ତା' ପରେ ଫଣା ଫେରାଇ ଗାତକୁ ଗଲା।

କିଛି ସମୟ ପରେ ସେ ପଦାକୁ ଆସିଲା। ପାଟିରେ ତା'ର ଦୁଇଟି ବଟିକା। କନ୍ୟାଟିକୁ ସେ ବଟିକା ଦୁଇଟି ଦେଇ କହିଲା— "ସ୍ୱାମୀ ମରିଗଲେ ତମର ଚିନ୍ତା କରିବାର କିଛି ନାହିଁ। ଏ ବଟିକାର ଗୁଣ ଅଦ୍ଭୁତ। ଏହି ଦୁଇଟି ବଟିକା ସେବନ କଲେ, ସ୍ୱାମୀ ନଥାଇ ବି ତୁମର ସୁନ୍ଦର ସୁନ୍ଦର ଦୁଇଟି ପୁତ୍ର ସନ୍ତାନ ହେବେ।"

କନ୍ୟାଟି କହିଲା—"ଦୁଇଟି ସୁନ୍ଦର ସୁନ୍ଦର ପୁତ୍ର ସନ୍ତାନର ଜନନୀ; ସୌଭାଗ୍ୟବତୀର ଚିହ୍ନ। ଏଥିରେ ଦ୍ୱିମତର ପ୍ରଶ୍ନ ଉଠୁନାହିଁ। କିନ୍ତୁ ବିନା ସ୍ୱାମୀରେ ପୁତ୍ର ଲୋକ ଚକ୍ଷୁରେ ଅସମ୍ମାନଜନକ। ହାସ୍ୟାସ୍ପଦ। ଘୃଣ୍ୟ। ଲୋକେ କହିବେ—ସ୍ତ୍ରୀଟି ଖାଉପି। ଅନ୍ୟ ପୁରୁଷରେ ଲିପ୍ତ। ବଟିକା ନାଁରେ ମିଥ୍ୟା କହି କଥାଟା ଏଡ଼ାଇ-ବାର ଅପଚେଷ୍ଟା କରୁଛି। ମୋର ଜୀବନ ସୁଖମୟ ହେବନାହିଁ। ବରଂ ଦୁର୍ବିସହ ହୋଇ ଉଠିବ। ତା'ଛଡ଼ା ପିଲାମାନେ ବଡ଼ ହେଲେ, ସଂସାରରେ ସେମାନେ ଜାରଜାତକ ଆଖ୍ୟା ନେବେ। ପିଲାମାନେ

ଶାନ୍ତି ବି ପାଇବେ ନାହିଁ । ମୁଁ ଏହି ବଟିକା ନେଇ କି ଲାଭ ପାଇବି ?"

ସାପଟି ଭାବିଲା, ଝିଅଟି କଥାରେ ପ୍ରତିବାଦ ଅସମ୍ଭବ । ବରଂ ତାହା କଷ୍ଟ ସତ୍ୟ । ଟିକିଏ ରହି ପୁଣି ସେ ଗାତ ଭିତରେ ପଶିଲା । ଏଥର ଆଉ ଗୋଟିଏ ବଟିକା ଧରି ଫେରି ଆସିଲା । ସେଇଟିକୁ କନ୍ୟାକୁ ଦେଇ କହିଲା—"ଯଦି କେହି ତୋର ବଦନାମ କରେ, ଏଇ ବଟିକାରୁ ଟିକିଏ ଚୂରି ତାର ମୁଣ୍ଡ ଉପରେ ପକାଇ ଦେବୁ । ସେ ଜଳିଯିବ । ମଣିଷର ଭସ୍ମ ବହୁତ ! ଥରେ ଜଣେ ପାନେ ପାଇଲେ, ଆଉ କେହି ମୁଣ୍ଡ ଟେକିବାକୁ ସାହସ କରିବେ ନାହିଁ । ତୁମେ ଓ ତୁମ ପିଲାମାନେ ଶାନ୍ତିରେ ରହିବ ।"

କନ୍ୟାଟି ହାତରେ ବଟିକାଟିକୁ ଧରିଲା । ମନରେ ତାର ଦୁଷ୍ଟ ବୁଦ୍ଧି । ସେ ସାପକୁ ପଚାରିଲା—"କିମିତି ଏଇ ବଟିକାକୁ ଚୂରିବ ?" ସାପଟି କହିଲା—"କାହିଁକି ? ଏଇଟା କ'ଣ ବଡ଼ କଥା । ତୁମେ ଦୁଇ ଆଙ୍ଗୁଠିରେ ତାକୁ ଚିପି ମକଚ । ଆସ୍ତେ ଆସ୍ତେ ଗୁଣ୍ଡ ବାହାରିବ । ସେଇ ଗୁଣ୍ଡକୁ ପକାଇଲେ ହେଲା ।"

କନ୍ୟାଟି ଦୁଇ ଆଙ୍ଗୁଠିରେ ବଟିକାକୁ ଚିପି ଦଳିବାକୁ ଆରମ୍ଭ କଲା । ସାପଟି ତା ଆଡ଼କୁ ଚାହିଁଥାଏ, ଝିଅର ଆଙ୍ଗୁଠି ଠିକ୍ ସାପ ମୁଣ୍ଡ ଉପରେ ଥାଏ । ସେମାନେ ପରସ୍ପର ଖୁବ ନିକଟରେ । ସାପ ଫଣା ଉପରେ ଝିଅଟି ବଟିକା ଦଳୁଥାଏ । ବଟିକାର ଗୁଣ୍ଡ ଆପେ ଆପେ ସାପ ମୁଣ୍ଡ ଉପରେ ପଡ଼ିଗଲା ।

ମୁହୂର୍ତ୍ତକ ମଧ୍ୟରେ ସାପଟି ପାଉଁଶ ହୋଇଗଲା । ସାପ ବଦଳ ଏକ ଲମ୍ବା ପାଉଁଶ ଧାରଟିଏ ସେଠି ପଡ଼ି ରହିଲା ।

କନ୍ୟାଟି ଏଥର ଭାରି ଖୁସି । ବୁଲିପଡ଼ି ସ୍ୱାମୀକୁ ତାର କୁଣ୍ଢାଇ ପକାଇଲା । କହିଲା—"ଭଲ କାମ କଲେ ଭଲ ଫଳ ମିଳେ । ମନ୍ଦ ଫଳ ମିଳେ ନାହିଁ । ଏକଥା ସତ୍ୟ, ସତ୍ୟ, ଧ୍ରୁବ ସତ୍ୟ । କିନ୍ତୁ ଭଗବାନଙ୍କ ଗତି ବିଚିତ୍ର । ସେ ଟିକିଏ ଖେଳନ୍ତି । ଶେଷରେ ଭଲ ଫଳ ଦିଅନ୍ତି ! ସାପଟି ମନ୍ଦ କାମ କରିବାକୁ ଯାଉଥିଲା, ସେଇ ହିଁ ନିଜେ ଧ୍ୱଂସ ପାଇବାର ବାଟ ବତାଇ ଦେଲା ।"

ବର କନ୍ୟା ଖୁବ୍ ଖୁସିରେ ଘରକୁ ଫେରିଲେ । ବହୁଦିନ ପର୍ଯ୍ୟନ୍ତ ଆନନ୍ଦରେ କାଳ କାଟିଲେ ।



# ମିଳିତ ଚକ୍ରାନ୍ତ

ଅନେକ ଦିନ ତଳର କଥା ।

କୃଷୀଟିଏ ଭୋରରୁ ଭୋରରୁ ହଳ କରିବାକୁ ବାହାରିପଡ଼ିଲା । ସାଥିରେ ବଳଦ । କାନ୍ଧରେ ଲଙ୍ଗଳ । ବାଲ୍ୟରେ ପଢ଼ିଛି ଲଙ୍ଗଳ ଯୋଚି ଦି'ଅକ୍ଷ ଧରିଛି କି ନାହିଁ, ହେଲେକ ବେଳକୁ କେଉଁଠି ଥିଲା, ବାଘଟିଏ ସେଠି ଆସି ହାଜର । ତାକୁ ଦେଖି ଗୁଣ୍ଡରେ କୃଷୀର ହାଲକ ଶୁଖିଗଲା । ସେ ମୁଣ୍ଡ ଟେକି ବାଘକୁ ଚାହିଁଲା । ଭୟରେ ପାଟି ତାର ଖନ ମାରି ଆସୁଥାଏ । ତଥାପି ସେ ହାତଯୋଡ଼ି ବାଘକୁ ନମସ୍କାର କରୁ କରୁ କହିଲା —"ଜଙ୍ଗଲର ରାଜା ବାଘ ମାମୁଁ । ମୁଁ ତମକୁ ଜୁହାର ହେଉଛି ।"

ବାଘଟି ଗର୍ଜନ କରି କହିଲା—"ଜୀବନସାରା ହଳ କରି ମାଟି ଚାଷିଲୁ । ଦେହରେ ଉପଳ ମାଂସ ନାହିଁ । ଆଉ ହଳ କରି ଲାଭ ନାହିଁ । ଏଥର ଶୀକାର କର । ଦେଖିବୁ ମୋଟା ହୋଇଯିବୁ ।"

ବୃଷୀଟି କହିଲା—"ମୁଁ ବୃଷୀ ଘରର ପିଲା । ବାପରୁ ପୁଅ ଆଉ ପୁଅରୁ ପୁଅ ଅମ୍ଭେ ଚାଷ କରି ଆସୁଛୁ । ଆଜି ମୁଁ ସେ ଧନ୍ଦା କମିତି ଛାଡ଼ିବି ?"

ବାଘଟି କହିଲା—"ବୋକା କାହାଁକା । ଯେଉଁ ଧନ୍ଦାରେ ଲାଭ ନାହିଁ, ସେ ଧନ୍ଦା କିଏ କରେ । ଦେଖ, ମୁଁ ଶୀକାର କରି କପରି ସୁସ୍ଥ ସବଳ ଅଛି ।"

ବୃଷୀଟି ଅନୁନୟ କରି କହିଲା—"ହାଁ ଆଜ୍ଞା । ଯେଝା କାମ ଯାହାକୁ ସାଜେ ।"

ବାଘଟି କହିଲା—"ଯଦି ତୋ କଥା ସତ, ତାହାହେଲେ ମୋ କାମ ମୁଁ କରିବି । ଆଜି ସକାଳୁ ଜଳଖିଆ ଖାଇନାହିଁ । ଶୀଘ୍ର ବଳଦ ବେଟାକୁ ହଳରୁ ଫିଟାଇଦେ । ମୁଁ ତାକୁ ଜଳଖିଆ କରେ ।"

ବୃଷୀଟି ଭାବିଲା, "ଯେଝା କାମ ଯାହାକୁ ସାଜେ" କହି ସେ ବଡ଼ ଭୁଲ କରି ଦେଇଛି । କ'ଣ ଉପାୟ କହି ବାଘକୁ ଭୁଲାଇବାକୁ ହେବ । ତାହାହେଲେ ବାଘ ତା ବଳଦ ଦୁ'ଟାକୁ ଛାଡ଼ି ଚାଲିଯିବ । ତେଣୁ ସେ କହିଲା—"ଭଗବାନ ସବୁ ଜୀବ ଖାଲି ସୃଷ୍ଟି କରି ନାହାନ୍ତି, ତାଙ୍କର ଜୀବନ ଧାରଣ ପାଇଁ ବାଟ ବି ଖଞ୍ଜିଛନ୍ତି । ଆମେ ହେଲୁ ମଣିଷ । ପେଟ ପୋଷିବା ପାଇଁ ଆମକୁ ଚାଷ କରିବାକୁ ହେବ । ସେଥିପାଇଁ ଆମକୁ ବଳଦ ଦେଇଛନ୍ତି । ଆପଣ ବାଘ । ଶୀକାର କରି ଖାଇବେ । ତେଣୁ ଆପଣଙ୍କ ପାଇଁ ବଳୁଆ, ଠେକୁଆ ଆଉ ହରିଣର ସୃଷ୍ଟି ।"

ଗୃଷୀଟିର କଥାର ମୋଡ ଦେଖି ବାଘ ସଗରେ ନଥାଁ । ଆଖି ଢ'ଠା ତାର ରଡ଼ ନଥାଁ ପରି ଜଳୁଥିଲା । ସେ ଗର୍ଜି-ଉଠିଲା—"ଯୁକ୍ତତର୍କ କରିବାକୁ ମୋର ବେଳ ନାହିଁ । ଶୀଘ୍ର ବଳଦ ଢ'ଠା ଫିଠା ।"

ଗୃଷୀଟି ଆଉ ଗୋଟିଏ ପ୍ରସ୍ତାବ ଦେଲା—"ତାକୁ ଛାଡ଼ିଦେଲେ ସେ ଘରକୁ ଯିବ । ଘରେ ତାର ସ୍ତ୍ରୀ ଗୋଟିଏ ଗାଈ ପାଳିଛି । ସେଇଟି ଦୁହାଁଳିଆ । ଦେଖିବାକୁ ହୃଷ୍ଟପୁଷ୍ଟ । ତାକୁ ଧରି ଆସିବ । ବଳଦକୁ ନ ଖାଇ ସେ ଗାଈଟିକୁ ଖାଇଲେ ଭଲ ହେବ ।"

ବାଘଟି ଭାବିଲା—ପ୍ରସ୍ତାବଟି ମନ୍ଦ ନୁହେଁ । ଦେଖାଇଦେଲା ଭଳି କହିଲା—"ତା'ମାନେ ତୁ କହୁଛୁ, ଆଜି ମୁଁ ଅଧା ପେଟ ଖାଇବି । ଯଦି ତୁ ବାଛୁରୀଟା ଧରି ଆସନ୍ତୁ, ତାହାହେଲେ ମୋର କାମ ଚଳିଯିବ । ତୋ ବଳଦକୁ ଛାଡ଼ିଦେବି ।"

ଗୃଷୀଟି ଲଙ୍ଗଳକୁ କାନ୍ଧରେ ପକାଇ ଆଉ ବଳଦକୁ ଆଗରେ ଚଲାଇ ଚଲାଇ ଘର ଅଭିମୁଖେ ଗଲା ।

ପଛରୁ ଡାକି ବାଘ ସତର୍କ କରିଦେଲା—"ଠକିବାର ଉଦ୍ୟମ କରିବୁ ନାହିଁ । ଠକିଲେ, ତୋ ଘରେ ପଶି, ଯାହାକୁ ପାଇବି ତାକୁ ଖାଇବି ।"

ଗୃଷୀଟି ହଳ ବଳଦ ନେଇ ଫେରିବା ଦେଖି ସ୍ତ୍ରୀ ତାର ବିସ୍ମିତ । ସେ ଭାବିଲା—ସ୍ୱାମୀ ତାର ଅଳସୁଆ । କାମ କରିବାକୁ ଗ୍ଚହେଁ ନାହିଁ । ଘରେ ବସି ହୁକା ଟାଣିବ । ସେଥିପାଇଁ ଫେରି ଆସିଲା । ଏଇନେ କହିବ, ହୁକା ପ୍ରସ୍ତୁତ କରି ଆଣ । ସେ ଆଗଭୁଗ କିଛି କହିଲା ନାହିଁ । ଗୃଷୀଟିର ଗତିବିଧି ଲକ୍ଷ୍ୟ କଲା ।

ବୃଷୀଟିର ମନ ମରିଯାଇଥାଏ । ସେ ଆସ୍ତେ ଆସ୍ତେ ଘରକୁ ଆସିଲା । ଲଙ୍ଗଳକୁ କାନ୍ଧରୁ ବାହାର କରି ଘରେ ଥୋଇଲା । ବଳଦ ଢ଼'ଟାକୁ ଦାଣ୍ଡରେ ବାନ୍ଧିଲା । ତା'ପରେ ମୁଣ୍ଡରେ ହାତ ଦେଇ ଥକ୍‌କା ମାରି ବସି ରହିଲା । ହୁଁ ଚୁଁ ପଦେ କିଛି କହିଲା ନାହିଁ ।

ଏ ସବୁ ଢଙ୍ଗ ଦେଖି ସ୍ତ୍ରୀଟି ତାର ବ୍ୟସ୍ତ । ପାଖକୁ ଧାଇଁଆସି ପଚାରିଲା—"କ'ଣ ଚମର ହେଲା ?" ଯାହା ଘଟିଥିଲା, ତାହା ସବୁ ବୃଷୀଟି ବଖାନ କଲା । ତା'ପରେ ଗାଈ ବାଛୁରୀ ଦେଲେ, ସେ ବଳକୁ ଯିବ ବୋଲି କହିଲା ।

ସ୍ତ୍ରୀଟି କହିଲା—"ତମଭଳି ଅବୋଧ ଆଉ ବୋକା ସଂସାରରେ କେହି ନାହାନ୍ତି । ଏତେ ଖଟି ଖଟି ବୃଷରୁ ଯାହା ମିଳେ ତୁମେତ ତାହା ଜାଣିଚ । କେତେ ବର୍ଷ ହେଲା ଫସଲ ବି ହେଉ ନାହିଁ । ଗୁଜୁରାଣ ମେଣ୍ଟେ ନାହିଁ । ତା' ଛଡ଼ା ବଳଦ ଢ଼'ଟା ବୁଢ଼ା । ତାଙ୍କୁ ବାଘ ଖାଇଲେ କ୍ଷତି ନାହିଁ । ଗାଈଟାର ଆମେ ଚଳୁଚେ । ତେଣୁ ମୁଁ ମୋର ଗାଈ ଦେବି ନାହିଁ । ଯତ୍ନ ନେଲେ, କାଲିକି ବାଛୁରିଟି ଗାଈ ହେବ । ତା'ର ଦୁଧ ଆମ କୁଟୁମ୍ବ ପୋଷିବ ।"

ଏ କଥା ଶୁଣିବାକୁ ବୃଷୀଟି ପ୍ରସ୍ତୁତ ନ ଥିଲା । ବଳଦ ଢ଼'ଟାକୁ ବାଘକୁ ଦେବାକୁ ହେବ ଶୁଣି ତାକୁ କାନ୍ଦ ମାଡ଼ିଲା । ସେ ତା ଦି ହାତରେ ମୁହଁକୁ ଲୁଚାଇ ସୁଁ ସୁଁ ହୋଇ କାନ୍ଦିବାକୁ ଆରମ୍ଭ କଲା ।

ସ୍ତ୍ରୀ ଟି କହିଲା—"ଡରିଲେ ଯମ ଛାଡ଼େ ନାହିଁ । କ'ଣ ଗୋଟେ ବ୍ୟବସ୍ଥା କରିବାକୁ ହେବ, ଯେଉଁଥିରେ ବାଘ ପଳାଇବ । ତା'ନ ଭାବି, ଚୁପ୍ ହୋଇ ବସି କାନ୍ଦୁଛ କାହିଁକି ?"

"ତୋ ଇଚ୍ଛା ଯାହା ତା କର ।" ସ୍ୱାମୀଟି ବିରକ୍ତ ହୋଇ କହିଲା ।

"ତାହାହେଲେ, ଭଲ ହେଲା । ଯାଅ, ବାଘକୁ କହିବ, ସ୍ତ୍ରୀ ତମର ଗାଈ ବାଛୁରି ଧରି ଆସୁଛି ।"

କୃଷୀଟିର ବାଘକୁ ଖୁବ୍ ଡର । ଖାଲି ହାତରେ ଯିବାକୁ ସେ ଜମା ପ୍ରସ୍ତୁତ ନୁହେଁ । ଖାଲି ହାତରେ ଗଲେ ବାଘ ରାଗିବ । ତାକୁ ମଧ୍ୟ ଗିଳି ଦେବ । ସେ ତା ସ୍ତ୍ରୀ କଥାରେ ରାଜି ହେଲା ନାହିଁ । ଅସମ୍ମତିରେ ମୁଣ୍ଡ ହଲାଇଲା ।

ସ୍ତ୍ରୀର ତାଡ଼ନାରେ ସେ ଅତି ଦୁଃଖରେ କ୍ଷେତକୁ ଗଲା । ଗଲାବେଳେ ବଳଦ ଦି'ଟାକୁ ଅଡ଼ାଇ କରି ନେଇ ଗଲା ।

ଡେରି ତ ହୋଇଗଲା । ସେଥିପାଇଁ ବାଘ ଅସ୍ଥିର । ବାରମ୍ବାର ତା'ର ଲାଙ୍ଗୁଳ ଛାଟିବା ଫଳରେ ପାଟିରେ ତା'ର ଫେଣ । ଦାନ୍ତଗୁଡ଼ାକ ସେ କଡ଼ମଡ଼ କରୁଥାଏ । ବୁଢ଼ା ବଳଦକୁ ଧରି କୃଷୀ ଫେରିବାରୁ ବାଘ ରାଗରେ ଗର୍ଜନ କଲା ।

କୃଷୀଟି ତ ସହଜେ ଛୁଆ । ବାଘର ଗର୍ଜନରେ ଦେହ ତା'ର ଥରିବାକୁ ଲାଗିଲା ଭୟଙ୍କର ଭାବରେ । ଆଣ୍ଠୁକୁ ଆଣ୍ଠୁ ତା'ର ବାଜୁଥାଏ ।

କୃଷୀକୁ ବିଲକୁ ପଠାଇ ସ୍ତ୍ରୀଲୋକଟି ସ୍ୱାମୀର ପୋଷାକ ପିନ୍ଧିଲା । ଗୋଟାଏ ଲୁଗା ଆଣି ଖୁବ୍ ବଡ଼ିଆ ପଗଡ଼ି କଲା । ଗୁହାଳରୁ ଡଙ୍ଗୁଟିଏ ବାହାର କରି ତା' ଉପରେ ବସି ବାଘକୁ ଭେଟିବାକୁ ବାହାରିଲା ।

ଖୁବ୍ ଜୋରରେ ଘୋଡ଼ା ଚଳାଇ ବିଲ ପାଖ ମୋଡ଼ରେ ସେ ପହଞ୍ଚିଗଲା । ସେଇଠୁ ସେ ଜୋରରେ ଗର୍ଜନକଲା--"ପଶୁମାନେ

ତୁମେ ଆଜ ନିର୍ଭୟ । ଜଳଖିଆ ପାଇଁ ମୋର ବାଘ ଦରକାର । ଦୁଇଦିନ ହେଲା ବାଘ ମାଂସ ମୋ ପାଟିରେ ବାଜନାହିଁ । ଆଜ ମୁଁ ଗୋଟାଏ ବାଘ ଜଳଖିଆ କରିବି । ତୁମମାନଙ୍କର କିଛି କ୍ଷତି କରିବି ନାହିଁ ।”

ବାଘ କାନରେ ଏ ଚିତ୍କାର ପଡ଼ିବା ମାତ୍ରେ ସେ କାନ ଦେଇ ଶୁଣିଲା । ସ୍ତ୍ରୀ ଲୋକଟି ଯାହା କହୁଥିଲା, ସେ ପରିଷ୍କାର ଭାବରେ ଶୁଣି ପାରିଲା । ଏତିକି ବେଳେ ସ୍ତ୍ରୀ ଲୋକଟି କହିଲା—“ଯାହାହେଉ ମୋ ଭାଗ୍ୟ ଭଲ । ଏଇଠି ଭଲ ବାଘଟିଏ ଅଛି । ତାକୁ ଆଜ ଜଳଖିଆ କରିବି ।”

ବାଘଟି ପ୍ରଥମେ ଏ କଥା ବିଶ୍ୱାସ କରି ପାରିଲା ନାହିଁ । ତା ଆଡ଼କୁ ମାଡ଼ି ଆସୁଥିବା ରାକ୍ଷସକୁ ସେ ଦେଖି ଟିକିଏ ଡରିଗଲା । ଏତିକି ବେଳେ ସ୍ତ୍ରୀ ଲୋକଟି ତା ହାତରେ ଧରିଥିବା ବାଡ଼ିକୁ ହଲାଇ ହଲାଇ କହିଲା—“ମୁଁ ଆସିବା ପୂର୍ବରୁ ଏହାକୁ ପଳାଇଛି । ଆରେ ବାଘ ! ତୋ ବେଳ ଏଇନେ କଟାହେବ । ପ୍ରସ୍ତୁତ ହୋଇ ଯାଆ ।”

ବାଘଟି ଭାବିଲା—ଆଉ ନିସ୍ତାର ନାହିଁ । ତା'ର ଶେଷ ବେଳ ହୋଇଗଲା । ସେ ଆଉ ମୁହୂର୍ତ୍ତେ ଅପେକ୍ଷା କଲା ନାହିଁ । ପ୍ରାଣ ବିକଳରେ ଧାଇଁବାକୁ ଲାଗିଲା ।

ବାଟରେ ଭାଲୁଆକୁ ଭେଟିଲା । ବାଘର ପ୍ରାଣ ବିକଳା ଦଉଡ଼ା ଦେଖି ସେ ଆଶ୍ଚର୍ଯ୍ୟ । ସେ ପଚାରିଲା—“ଏମିତି ଗୁଡ଼ନଆ ହୋଇ କୁଆଡ଼େ ପଳାଉଛ । ସକାଳେ ବଳଦ ଖାଇବାର ଥିଲା, କ'ଣ ହେଲା ? ମୁଁ ଯାଉଥିଲି ହାଡ଼କୁ ଚେକେଟିବାକୁ ।”

ବାଘ କହିଲା—"ସେ ବାଟେ ଯାଆ ନାହିଁ । ସେଠି ରାକ୍ଷସଟିଏ ଅଛି । ତନ୍ଟୁ ଘୋଡ଼ାରେ ବସି ନେଇ ଆଉ ବୃଢୀକୁ ଜଗିଛି । ସେ କହୁଛି, ପ୍ରତିଦିନ ସକାଳେ ସେ ବାଘଟିଏ ଜଳଖିଆ କରେ ।"

ବିଲୁଆଟି ହସି ହସି ବେଦମ । ତା'ର ହସ ଦେଖି ବାଘଟି ଅପ୍ରତିଭ ହେଲା । ଦମ୍ ନେଇ ବିଲୁଆଟି କହିଲା—"ଖରାରେ ଆପଣ ଝଲକା ହୋଇ ଗଲେଣି । ରାକ୍ଷସ କେଉଁଠୁ ଆସିବ ? ବୃଢୀର ସ୍ତ୍ରୀ ପୁରୁଷ ବେଶ ହୋଇ ବସିଛି ।"

"ତୁ କ'ଣ ସତ କହୁଛୁ ?" ବାଘଟି ପଚାରିଲା । କଣ୍ଠରେ ତା'ର ଅସ୍ଥିରତା ।

"ଏ ବିଷୟରେ ମୁଁ ନିଃସନ୍ଦେହ । ଖରାରେ ଯଦି ଆପଣଙ୍କ ଆଖି ଝଲକା ହୋଇନାହିଁ, ଦେଖନ୍ତୁ ତାର ବେଣୀ ପଗଡ଼ିରୁ ଓହଳିପଡ଼ୁଛି ।"

ବିଲୁଆର ଆକ୍ଷେପ ବାଘର ଅହମିକାରେ ଆଘାତ । ସେ ତାର ବଡ଼ିମା ଦେଖାଇ କହିଲା—"ମୁଁ ଏଡ଼େ ବୋକା ନୁହେଁ ଯେ ନାରୀଟି ପୁରୁଷ ବେଶ ହୋଇଛି, ଅଥଚ ମୁଁ ତାଙ୍କୁ ଠଉରାଇ ପାରୁ ନାହିଁ । ରାକ୍ଷସର କଥା ପରିଷ୍କାର ଭାବରେ ମୁଁ ଶୁଣିଛି । ସେ ଦା' ହଲାଇବା କଥା ବି ଦେଖିଛି ।"

"ଚାଲନ୍ତୁ ମୁଁ ଆପଣଙ୍କୁ ନେଇ ଦେଖାଇବି ଯେ ସେଠି ରାକ୍ଷସ ଫାକ୍ଷସ କିଛି ନାହିଁ । ଗୋଟିଏ ସ୍ତ୍ରୀ ପୁରୁଷ ବେଶ ହୋଇ ଭଡ଼ଙ୍ଗ ବାହାର କରୁଛି ।" ଏହାଥିଲା ବିଲୁଆର ଦମ୍ଭୋକ୍ତି । ବାଘ ସହଜେ ବିଲୁଆକୁ ବିଶ୍ୱାସ କରୁ ନଥିଲା । ତେଣୁ ସେ କହିଲା—"ବିଲୁଆ, ମୋତେ ଭଣ୍ଡାଇବା ପାଇଁ ଅପଚେଷ୍ଟା କର ନାହିଁ । ମୁଁ ଜାଣେ, ତୁ ଚତୁର । ଠାଟ୍ଟା ଥାପଡ଼ କରିବା ତୋର ଅଭ୍ୟାସ ।"

ବିଲୁଆଟି ଅତି ନରମ ଭାବରେ କହିଲା—"ହଜୁର । ଆପଣଙ୍କ ସାଥୀରେ ଥଟ୍ଟା । ଏହା କ'ଣ ସମ୍ଭବ ! ଲୋକେ କହନ୍ତି, ବିଲୁଆ ବୁଦ୍ଧିମାନ । କିନ୍ତୁ ସେ ବାଘର ଭୃତ୍ୟ । ବାଘ ପଛେ ପଛେ ଯାଏ । ବାଘ ସାହସୀ । ପଶୁକୁ ଆକ୍ରମଣ କରେ । ମାରେ । ତାହା ରକ୍ତ ପିଏ । ମାଂସ ଖାଏ । ପଛରେ ଲୁଚି ଲୁଚି ବିଲୁଆ ଦେଖୁଥାଏ । ବାଘ ଖାଇ ସାରିଲେ ତାର ଉଚ୍ଛିଷ୍ଟ ଖାଏ । ସେଇ ହିଁ ତାର ଆଭିଜାତ୍ୟ । ବାହାଦୁରି । ସବୁଦିନ ସେ ବାଘର ବଶ୍ୟ । ସେ ପୁଣି ତାର ପ୍ରଭୁ ବାଘ ସାଥିରେ ଥଟ୍ଟା କରିବ ? ଅସମ୍ଭବ । କିନ୍ତୁ ଆଜି ଓଲଟା ଦେଖୁଛି । ମୋ ପ୍ରଭୁ ଆଜି ଭୀରୁ । ପଳାତକ । ଘୋର ନାସ୍ତିକ ପୁରୁଷ ବେଶ ଦେଖି ଭୁତ ବୋଲି ଭାବୁଛନ୍ତି । ପ୍ରଭୁଙ୍କର ଏତାଦୃଶ୍ୟ ବ୍ୟବହାର ଆଗରୁ ତ ଶୁଣା ନଥିଲା । ଆଜିମଧ୍ୟ ମୁଁ ବିଶ୍ୱାସ କରି ପାରୁନାହିଁ ।"

ଏ ପ୍ରକାର ଉଦ୍ଧତ ଗାଳି ଶୁଣି ବାଘଟି ଲଜ୍ଜିତ । ଭାଷାର ଶକ୍ତି ଅଛି । ତାହା ଉଷ୍ଣତା ଆଣେ । ବେଳେବେଳେ ପାଗଳ କରି-ଦିଏ । ନିଶାସକ୍ତ ପରି ଶ୍ରୋତା ବ୍ୟବହାର କରେ । ବାଘ ବିଲୁଆ ଭର୍ତ୍ସନାରେ ଉତ୍ତେଜିତ ହୋଇ କହିଲା—"ଆ ଯିବା । ତୋର ସେ ଲୋକକୁ ଭେଟିବା । କିନ୍ତୁ ତୁ ଯେପରି ସେଠୁ ଲାଙ୍ଗୁଡ଼ ଯାକି ପଳାଇ ନ ଆସୁ ।"

"ଏଇ ଗୋଟେ କଥା । ମୁଁ ଜବାବ ଦେଉଛି ଆପଣଙ୍କ ସାଥେ ସାଥେ ରହିବି ବୋଲି । ଯଦି ଅବିଶ୍ୱାସ ହେଉଛି, ମୋ ଲାଙ୍ଗୁଡ଼କୁ ଆପଣଙ୍କ ଲାଙ୍ଗୁଡ଼ ସାଥିରେ ବାନ୍ଧି ଦିଅନ୍ତୁ । ତାହା ହେଲେ ମୋର ପଳାଇବାର ପ୍ରଶ୍ନ ଉଠିବ ନାହିଁ ।" ବିଲୁଆଟି କହିଲା ।

ବାଘ ଏଥିରେ ରାଜି। ଦୁହେଁ ଦୁହିଁଙ୍କର ଲାଙ୍ଗୁଡ଼କୁ ଏକାଠି ବାନ୍ଧିଦେଲେ । ତା'ପରେ ଚାଲିଲେ ଚାଷୀ ପାଖକୁ ଛନ୍ଦାଛନ୍ଦି ହୋଇ।

ଏଣେ ସ୍ତ୍ରୀର ଚାଲ ଦେଖି ଚାଷୀ ଭାରି ଖୁସି । ଉଭୟେ ସେଇ କଥା କୁହା କୁହି ହୋଇ ହସି ହସି ଗଡ଼ିଗଲେ। ଉଭୟେ ଘରକୁ ଫେରିବାକୁ ବାହାରିଛନ୍ତି, ଚାଷୀଟି ଦେଖିଲା ପୁଣି ବାଘଟି ଲେଉଟିଲାଣି। ଭାରି ଦର୍ପରେ। ସାଥିରେ ବିଲୁଆ । ଉଭୟେ ତାଙ୍କର ଲାଙ୍ଗୁଡ଼ ଏକାଠି ବାନ୍ଧିଛନ୍ତି। ଚାଷୀଟି ତ ସବୁବେଳେ ଛୁନିଆ। ସେ ତା ସ୍ତ୍ରୀକୁ କହିଲା—"ଏଥର ବାଘ ପଛେ ବଳଦକୁ ଖାଉ। ଚାଲ ଘୋଡ଼ାରେ ପଳାଇବା। ଏଠି ମୁହୂର୍ତ୍ତେ ରହିଲେ ବିପଦ।"

ସ୍ତ୍ରୀଟି କହିଲା—"ଭାରି ଭଲ କଥା କହୁଚ। ଆମେ ଛାଡ଼ି ଦେବା। ଆମ ବଳଦକୁ ବାଘ ଖାଇବ। ଆମେ ଘରକୁ ପଳାଇବା। ମୁଁ ଦେଖୁଛି ତୁମେ ଖାଲି ବୋକା ନୁହେଁ, ଭୀରୁ ବି। ଚପ୍‌ହୋଇ ବସ। ତମର କିଛି କହିବା ଦରକାର ନାହିଁ।" ତା'ପରେ ସେ ତା ଦା'କୁ ହଲାଇ ହଲାଇ ଚିତ୍କାର କଲା— "ବିଲୁଆ ! ପ୍ରକୃତରେ ତୁ ବୁଦ୍ଧିମାନ। ପଟକେଇ କରି ବାଘକୁ ଘେନି ଆସିଲୁ । ମୁଁ ତାକୁ ଏଇନେ ଜଳଖିଆ କରି ଦେଉଛି। ତୁ ତାର ହାଡ଼ ଖାଇ ମଜା କରିବୁ।

ଏକଥା ଶୁଣି ବାଘ କି ରହେ ? ଭାବିଲା—ରାକ୍ଷସ ସାଥିରେ ମିଳି ହୋଇ ବିଲୁଆ ଏକ ଚକ୍ରାନ୍ତ କରିଛି। ରହିଲେ ପୁଣି ଫାନ୍ଦରେ ପଡ଼ିଯିବ। ମୁହୂର୍ତ୍ତେ ଅପେକ୍ଷା ବି ବିପଦ । ସେ ମୁହଁ ବୁଲାଇ ଧାଇଁବାକୁ ଲାଗିଲା। ଛୁନିଆ ଦେଲେ ଭ୍ରମ ହୁଏ। ସ୍ମରଣ ଶକ୍ତି

ଲୋପ ପାଏ । ବିଲୁଆର ଲାଙ୍ଗୁଡ଼ ଯେ ତା ଲାଙ୍ଗୁଡ଼ରେ ବନ୍ଧା ହୋଇଛି, ସେ କଥା ବାଘ ଭୁଲି ଗଲା ।

ସେ ଦୌଡ଼ିକରି ଗଲାବେଳେ, ବିଲୁଆଟି ଘୋଷାଡ଼ି ହୋଇ-ଯାଉଥାଏ । ଅଟକିବା ପାଇଁ ତାର ଅନୁନୟ ଆଉ ଚିତ୍କାର ବାଘକୁ ଆହୁରି ସୁନିଆ କରୁଥାଏ । ତେଣୁ ତାର ଗତି କ୍ଷିପ୍ରରୁ କ୍ଷିପ୍ରତର ହେଲା । ବଣ ଜଙ୍ଗଲ ପାହାଡ଼ ପର୍ବତ ଦେଇ ବାଘ ଧାଉଁଥାଏ । ପଥର ଗଛ ଆଉ ବୁଦା ଦେହରେ ଘସି ହୋଇ ବିଲୁଆ ଉତ୍କ୍ରାନ୍ତ । ଶେଷରେ ଦେହରୁ ତା'ର ଖଣ୍ଡ ଖଣ୍ଡ ହୋଇ ମାଂସ ଛିଣ୍ଡି ପଡ଼ିଲା । ବାଘ ଦମ୍ ନେଲା ବେଳକୁ ବିଲୁଆଟି ମରି ସାରିଥିଲା ।



# ବିଲୁଆ ଓ ତିତିର ପକ୍ଷୀ

ବହୁଦିନ ତଳର କଥା । ବିଲୁଆ ଆଉ ତିତିର ପକ୍ଷୀ ଚିର-ଦିନ ବନ୍ଧୁ ହୋଇ ରହିବେ ବୋଲି ଶପଥ ନେଲେ ।

ବିଲୁଆଟି ଈର୍ଷାପରାୟଣ । ହିଂସୁକ । ବନ୍ଧୁ ହିସାବରେ ଯାହା ତା'ର ପ୍ରାପ୍ୟ, ତା'ଠାରୁ ଅଧିକ ନେବାକୁ ସେ ତତ୍ପର । ସେ ବିଷୟରେ ସେ କ କଠୋର । କିନ୍ତୁ ତିତିର ପକ୍ଷୀ ସବୁ ଦେଖେ, ସହେ । କେଉଁଥିରେ ଉଁ କି ଚୁଁ କିଛି କହେ ନାହିଁ । ତଥାପି ବିଲୁଆ

ବନେ ତାକୁ କହିଲା—"ତୁ ବନ୍ଧୁତ୍ୱ ବିଷୟରେ ବଡ଼ ବଡ଼ ବକ୍ତୃତା ଦେଉଛୁ । କିନ୍ତୁ ଦେଖିଲାବେଳକୁ ମୁଁ ତୋ ପାଇଁ ଯାହା କରେ, ତୁ ତାର ଅଧା ବି କରୁ ନାହୁଁ । ତୁ ଖାଲି ସୁବିଧାବାଦୀ । ବନ୍ଧୁତ୍ୱର ସୁବିଧା ନେବା ପାଇଁ ତୁ ବନ୍ଧୁ ହୋଇ ରହିଚୁ । ତୁ ଯଦି ମୋତେ ପ୍ରକୃତରେ ହସାଇ ପାରିବୁ, କନ୍ଦାଇ ପାରିବୁ, ଖାଇବାକୁ ଦେଇ ପାରିବୁ ଆଉ ଦରକାର ପଡ଼ିଲେ ମୋର ଜୀବନ ରକ୍ଷା କରି ପାରିବୁ, ତାହାହେଲେ ମୁଁ ତୋତେ ପ୍ରକୃତରେ ଜଣେ ବନ୍ଧୁ ବୋଲି ଗ୍ରହଣ କରିବି । ନଇଲେ, ନାଇଁ ।"

ପକ୍ଷୀଟି କହିଲା—"ଯାହା କହିଲୁ, ସବୁ ତ ପରୀକ୍ଷାର କଥା । ତୁଣ୍ଡରେ କହି ଲାଭ ନାହିଁ । ତୁ ମୋ ସାଥିରେ ଆ । ମୁଁ ତୋତେ ହସାଇ ପାରୁଚି କି ନାଁ, ଦେଖ । ଯଦି ହସାଇ ନ ପାରିବି, ତୁ ମୋତେ ଖାଇଦେବୁ ।"

ତିତ୍ତିରଟି ଉଡ଼ି ଉଡ଼ି ଯାଉଥାଏ । ବାଟରେ ଦେଖିଲା— ଦୁଇଟି ବାଟୋଇ ଆଗପଛ ହୋଇ ଯାଉଛନ୍ତି । ଉଭୟେ କ୍ଲାନ୍ତ । ଅବସନ୍ନ । ଆଗ ବାଟୋଇଟି ତାର ଗଣ୍ଠିଲିକୁ ଗୋଟିଏ ବାଡ଼ିରେ ଭୁଷିଇ ପଛଆଡ଼କୁ ଝୁଲାଇଛି । ପଛ ବାଟୋଇଟି ହାତରେ ଯୋତା ଦୁଇଟି ଧରିଛି । ଚଢ଼େଇଟି ହାଲକା । ଅତି ଧୀରେ ଧୀରେ ଯାଇ ଚୁପ୍‌କିନା ଆଗ ବାଟୋଇର ବାଡ଼ିରେ ବସିପଡ଼ିଲା । ପରଟି ପଡ଼ିଲେ ଯେମିତି ଜାଣି ହୁଏ ନାହିଁ, ଆଗ ବାଟୋଇଟି ତା ବାଡ଼ିରେ ଚଢ଼େଇ ବସିବା କଥା ଜାଣି ପାରିଲା ନାହିଁ । ପଛ ବାଟୋଇଟି ଦେଖିଲା, ଚଢ଼େଇଟି ତା'ର ଆଖି ଆଗରେ ବସିଛି । ପିଟିଦେଲେ ଗଡ଼ିଯିବ । ତିତ୍ତିର ଚଢ଼େଇ ମାଂସ ଖରି ବଢ଼ିଆ । ଭାରି ଖାଇବାଟା ଚଉକସ ହେବ । ତେଣିକା ସେ ଆଉ କଲାନାହିଁ । ଧରିଥିବା ଯୋତାକୁ

ଚଢ଼େଇ ଉପରକୁ ଫିଙ୍ଗିଦେଲା । ଚଢ଼େଇଟି ଉଡ଼ିଗଲା, ଯୋଚା ମାଡ଼ ବସିଲା ଆଗ ବାଟୋଇର ମୁଣ୍ଡରେ ।

ଯୋଚା ମାଡ଼ ଖାଇ ଆଗ ବାଟୋଇ ମୁହଁ ବୁଲାଇଲା । ସେତେବେଳକୁ ସେ ଝଗଡ଼ା ନାହିଁ । ଚଣ୍ଡାଳଟିକୁ ଚଲେ ଥୋଇ-ଦେଲା ପଛ ବାଟୋଇକୁ ସେ ଚଡ଼ା ଗଳାରେ ପଚାରିଲା—"ତୋ ମତଲବ ମୁଁ ଜମା ବୁଝି ପାରୁନି । ମୋତେ ହଇରାଣ କରିବାର ଉଦ୍ଦେଶ୍ୟ ତୋର କ'ଣ ? ମୁଁ କ'ଣ କଲି ଯେ ତୁ ମୋ ମୁଣ୍ଡକୁ ଯୋଚା ଫିଙ୍ଗିଲୁ ?"

ଯୋଚା ଆଗ ବାଟୋଇର ମୁଣ୍ଡରେ ବାଜିବା ଦେଖି ପଛ ବାଟୋଇଟି ଅପ୍ରତିଭ ଉପ୍ତାକୁଳ । ସେ ଡରି ଡରି କହିଲା— "ଭାଇ, ତୁମେ ବିଶ୍ୱାସକର ବା ନାହିଁ, ମୁଁ ତମ ଉପରକୁ ଯୋଚା ଫିଙ୍ଗିନାହିଁ । ତମ ବାଡ଼ ଉପରେ ଗୋଟିଏ ତିତିର ପକ୍ଷୀ ବସିଥିଲା । ତାକୁ ଲକ୍ଷ୍ୟକରି ଯୋଚା ଫିଙ୍ଗିଲି । ସେ ତ ଉଡ଼ିଗଲା, ଯୋଚାଟା ତମ ମୁଣ୍ଡରେ ବାଜିଗଲା ।"

ବାଟୋଇ ତ ଆଘାତ ପାଇଛି, ସେ ଏଇ ଅନୁନୟକୁ ବିଶ୍ୱାସ କରି ପାରିଲା ନାହିଁ । ଚଢ଼େଇ ବସିବା କଥା ତାକୁ କପୋଳକଳ୍ପିତ ଭଳି ଲାଗିଲା । ସେ ପାଟିକରି କହିଲା—"ମୋ ବାଡ଼ରେ ପୁଣି ଚଢ଼େଇ ? ମୋତେ ତୁ କ'ଣ ଏତେ ବୋକା ବୋଲି ଭାବୁଛୁ । ତେଣୁ ମୋତେ ସହଜରେ ଭୁଲାଇ ଦେବୁ । ପାଜି କାହାଁକା । ତୋତେ ପାନେ ନ ଦେଲେ ହେବ ନାହିଁ ।" ଏତକ କହି ଆଗ ବାଟୋଇଟି ପଛ ବାଟୋଇ ଉପରକୁ କୁଦି ପଡ଼ିଲା । ଉଭୟେ ଧରାଧରି ହେଲେ । ଗଡ଼ାଗଡ଼ି ବି ଚାଲିଲା । ସେମାନଙ୍କର ସମସ୍ତ ଶକ୍ତି ଲୋପ ପାଇବା ପର୍ଯ୍ୟନ୍ତ । ଶେଷକୁ ଉଭୟଙ୍କ ଅବସ୍ଥା ସାଙ୍ଘାତିକ ।

ଉଭୟେ ରକ୍ତାକ୍ତ । ପିନ୍ଧା ଲୁଗା ପର୍ଯ୍ୟନ୍ତ । ଉଭୟଙ୍କର ଦୃଷ୍ଟି ସଙ୍ଗୀନ ।

ବାଲୁଆଟି ବୁଦାମୂଳେ ଥାଇ ସବୁ ଦୃଶ୍ୟ ଦେଖୁଥିଲା । ସେ ହସି ହସି ବେଦମ୍ ହୋଇ ତା'ର ଛାତି ଫାଟି ଯାଉଥାଏ ଯେ ଆଉ ସେ ହସି ପାରୁ ନଥାଏ । ଏତିକି ବେଳକୁ ତିତିର ପକ୍ଷୀ ତା ପାଖକୁ ଆସି ପଚାରିଲା—"ମନଇଚ୍ଛା ହସିଲ ତ ?"

ବାଲୁଆଟି କହିଲା—"ହଁ ହସାଇଲୁ ସତ, କିନ୍ତୁ ହସାଇବା ବଡ଼ କଥା ନୁହେଁ । ଦୁଷ୍ଟାମି କରିବାଟା ଅତି ସାମାନ୍ୟ କଥା । କିନ୍ତୁ ମନରେ ଆବେଗ ଆଣି କନ୍ଦାଇବା ଘୋର କଷ୍ଟ । ମୋର ବିଶ୍ୱାସ ସେ କାମ ତୋ ହାତରେ ହେବ ନାହିଁ ।"

"ଦେଖାଯାଉ ଏଇଟା ହେଉଛି ନାଁ ନାହିଁ ।" ତିତିର ପକ୍ଷୀଟି ବିରକ୍ତ ଆଉ କ୍ଷୁବ୍ଧ ହୋଇ କହିଲା ।

ଏଇ ସମୟରେ ଗୋଟିଏ ଶିକାରୀ ତା'ର କୁକୁର ସହିତ ସେଇ ବାଟେ ଯାଉଥିଲା ।

ଏହା ଚଢ଼େଇଟିର ନଜରରେ ଯେମିତି ପଡ଼ିଛି, ସେ ବାଲୁଆକୁ ଡାକି କହିଲା—"ଆ, ଏ ଯେଉଁ ଗଛର କୋରଡ଼ ଦେଖୁଛୁ, ସେଇଠି ଲୁଚି ରହିବୁ । ଏଥର ତୋ ଆଖିରୁ ଯଦି ଲୁହ ନ ବାହାରିଛି, ତାହାହେଲେ ତୋର ଜୀବନ ବୋଲି ଗୋଟେ କିଛି ନାହିଁ ବୋଲି ତୁ ବୁଝିବୁ ।"

ତିତିର ପକ୍ଷୀ ଯେମିତି କହିଲା, ବାଲୁଆଟି ସେମିତି ଲୁଚିଗଲା । ଏଣେ ଚଢ଼େଇଟି ବୁଦା ଭିତରେ ପଶି ଡେଣା ଫଡ଼ ଫଡ଼ କଲା । କୁକୁର ଏ ଶବ୍ଦ ଶୁଣି ଉଚ୍ଛନ୍ନ । ସେ ବୁଦା ଆଡ଼କୁ ଆସି ଝଙ୍କିମାରିଲା । ଚଢ଼େଇଟି ବାଲୁଆ ଲୁଚିଥିବା କୋରଡ଼ ଆଡ଼କୁ

ଉଡ଼ିଯିବା ଦେଖି କୁକୁରଟି ବି ତା ପିଛୁ ଧରିଲା । ସେଠି ବଳଦ ଆଉ ଗନ୍ଧ ଯେମିତି ପାଇଛି, କୁକୁର କି ଚୁପ୍ ରହେ ! ସେ ଖାଲି ଆମ୍ଭ ବଦାର ହୋଇ ଚିତ୍କାର କରି ଭୁକୁଥାଏ । ଶିକାରୀ କ'ଣ ହେଲା ବୋଲି ଆସି ଦେଖେତ, କୋରଡ଼ରେ ବଳଦ ଆଟିଏ ପଶିଛି । ତା'ର ଲଙ୍ଗୁଡ଼କୁ ଧରି ଶିକାରୀ ଟାଣି ଟାଣି ବାହାରେ ଛାଡ଼ି ଦେଲା । କୁକୁର ତାକୁ ଗଡ଼ାଗଡ଼ି କରି ଖୁବ୍ କାମୁଡ଼ା କାମୁଡ଼ି କଲା । ବଳଦଆଟି ଅଲକାତର ହୋଇ ପଡ଼ିବାରୁ ଛାଡ଼ି ଦେଲା । ଶିକାରୀଟି ଭାବିଲା—ବଳଦଆଟି ମରି ଗଲାଣି । ତେଣୁ କୁକୁରଟିକୁ ସେଠାରୁ ନେଇଗଲା ।

ତିତିର ପକ୍ଷୀ ଆସି ଡାକିବାରୁ ବଳଦଆ ଆଖି ଖୋଲିଲା । ସେତେବେଳକୁ ତାର ଆଖିରୁ ଧାର ଧାର ଲୁହ ବୋହି ଯାଉଥାଏ । ଦେହରେ ଉଠିବାକୁ ଶକ୍ତି ନାହିଁ । କଥା ବି କହି କହିପାରୁ ନଥାଏ । ତିତିର ଆଗ୍ରହସହକାରେ ପଚାରିଲା "କାହିଁକି ତ ?"

କ୍ରୋଧାନ୍ୱିତ ହୋଇ ବଳଦଆ କହିଲା—"ଚୁପ୍ କର । ଆଉ ଟିକିଏ କୁକୁର ରହିଥିଲେ, ମରିଥାନ୍ତି । ଯାହାହେଉ, ଶିକାରୀଟି ଦୟା କଲା । ବଞ୍ଚିଗଲି ।"

ବହୁ ସମୟ ସେଇଠି ବଳଦଆଟି ଶୋଇ ରହିଲା । କେତେବେଳକୁ ଦେହରେ ଟିକିଏ ଜୋର ହେବାରୁ ସେ ଉଠି କହିଲା— "ମୋତେ ଭାରି ଭୋକ । ଏଇନେ ପ୍ରକୃତରେ ବନ୍ଧୁତ୍ୱ ଦେଖାଇବାର ବେଳ । ମୋତେ ଦି'ଟା ଭଲକରି ଖାଇବାକୁ ଦେଲେ, ମୁଁ ତୋତେ ପ୍ରକୃତ ବନ୍ଧୁ ବୋଲି ସ୍ୱୀକାର କରିବି ।"

"ହଉ, ତେବେ ଆସ । ଦରକାର ବେଳେ ନିଜେ ନିଜକୁ ସାହାଯ୍ୟ କରିବ ।" ତିତିର କହି ଉଡ଼ି ଚାଲିଗଲା । ପଛରେ କଷ୍ଟେ-ମଷ୍ଟେ ବଳଦଆ ଚାଲିଥାଏ । କିଛି ବାଟ ଗଲା ପରେ ତିତିର ଦେଖିଲା —ପଞ୍ଚାଏ ସ୍ତ୍ରୀ ଲୋକ କ୍ଷେତକୁ ଯାଉଥାନ୍ତି । ମୁଣ୍ଡରେ ସମସ୍ତଙ୍କର

ପୁଟୁଳାଟିଏ । ସେଥିରେ ଖାଇବା ଜିନିଷ ରହିଛି । ଦ' ପଥରେ ସ୍ୱାମୀ ବଲରୁ ଉଠି ତାକୁ ଖାଇବ ।

ତିତ୍ତିରଟି କରୁଣ ସ୍ୱରରେ ଡାକିଲା । ତାପରେ ଏପଟ ବୁଦାରୁ ସେପଟ ବୁଦାକୁ ଡେଇଁ ଡେଇଁ ଯାଉଥିଲା । ଜଣାଯାଉଥିଲା, ସତେ ଯେପରି ସେ ଆହତ । ଉଡ଼ିବାର ଶକ୍ତି ତାର ନାହିଁ ।

ସ୍ତ୍ରୀ ଲୋକମାନେ ଚିତ୍କାର କଲେ—"ପକ୍ଷୀଟି ଆହତ । ପକ୍ଷୀଟି ଆହତ । ତାକୁ ସହଜରେ ଧରି ହେବ ।" ତାପରେ ମୁଣ୍ଡରେ ସେମାନେ ନେଉଥିବା ଖାଇବା ଜିନିଷ ଥୋଇ ତଳେ ରଖିଲେ । ଚଢ଼େଇ ପଛରେ ଗୋଡ଼ାଇଲେ । ଚଢ଼େଇଟି ଡେଇଁ ଡେଇଁ ଯାଉଥାଏ । ବାଟରେ ବୁଦା ଭିତରେ ପଶିଯାଏ । ବାଡ଼ିଆବାଡ଼ି କଲେ ବାହାରି ଆସେ । ଏଇ ଭଳି ସେ ଖେଳେ । ସେଥିରେ ସ୍ତ୍ରୀ ଲୋକମାନେ ବିହ୍ୱଳ ହୋଇଯାଇ ବହୁତ ଆଗକୁ ଚାଲିଗଲେ । ଏପଟେ ବଲୁଆ ଛପି ଛପି ଆସି ବେଶ୍ ପେଟେ ଖାଇସାରି ସେଠୁ ପଳାଇଲା ।

ତିତ୍ତିର ଦେଖିଲା ଯେ ବଲୁଆର ଖାଇବା ଶେଷ ହୋଇଗଲାଣି । ସେ ଉଡ଼ି ଚାଲିଗଲା । ବଲୁଆ ପାଖେ ପହଞ୍ଚି ପଚାରିଲା—"ଏଥର ସନ୍ତୁଷ୍ଟ ହେଲୁ ତ ?"

ବଲୁଆ କହିଲା—"ମୁଁ ମାନୁଛି, ତୁ ମୋତେ ହସାଇଲୁ, କନ୍ଦାଇଲୁ ଆଉ ଖାଇବାକୁ ଦେଲୁ । ଏଥର ଚରମ ପରୀକ୍ଷା—ମୋର ଜୀବନ ରକ୍ଷିପାରିବୁ ତ ?"

ପକ୍ଷୀଟି କରୁଣ ଭାବରେ କହିଲା "ମୁଁ ଛୋଟ, ଦୁର୍ବଳ । ଏଣେ ଡେରି ବି ହେଲାଣି । ବସାକୁ ଫେରିବାକୁ ହେବ । ରାସ୍ତାରେ ଗଲେ ବହୁତ ଦୂର ପଡ଼ିବ । ଚାଲ, ନଈ ପାରି ହୋଇ ପଳାଇବା ।

ଅସୁବିଧା ହେବ ନାହିଁ । ମୋର ସାଙ୍ଗ କୁମ୍ଭୀର । ସେ ଆମକୁ ନଈ ପାର କରାଇଦେବ ।”

ତିତିର କଥାରେ ରାଜି ହୋଇ ବଲୁଆଟି ଗଲା । ନଈ ପାଖରେ କୁମ୍ଭୀର ଥିଲା । ତିତିର ଡାକିବାରୁ ସେ ଆସିଲା । ନଈ ପାର କରିଦେବାକୁ ତିତିର ତାକୁ ଅନୁରୋଧ କଲା । କୁମ୍ଭୀର ରାଜି ହେବାରୁ ଉଭୟେ ତା ପିଠିରେ ବସିଲେ ।

ନଈ ମଝି । ତିତିର କହିଲା—“କୁମ୍ଭୀର ମୋର ସାଙ୍ଗ ହେଲେ କଣ ହେଲା, ସେ ଭାରି ବଦମାସ୍ । ହୁଏତ ସେ ଆମକୁ ବୁଡ଼ାଇଦେବ । ତାହେଲେ ଆମେ କଣ କରିବା ?”

ବଲୁଆ ଡରିଗଲା । ତଥାପି ମୁହଁ ଟାଣରେ କହିଲା,—“ସେ ବୁଡ଼ାଇଲେ ଆମେ ଦୁହେଁ ବୁଡ଼ିଯିବା ।”

ତିତିର ହସି ହସି କହିଲା—“ଜମା ନୁହେଁ, ଜମା ନୁହେଁ । ମୋର ଡେଣା ଅଛି । ମୁଁ ଉଡ଼ି ଚାଲିଯିବି । ତୁ ଖାଲି ବୁଡ଼ିବୁ ନାହିଁ, ତୋତେ କୁମ୍ଭୀର ଏଠି ଖାଇ ବି ଦେବ ।”

ପାଟିରୁ ତାର କଥା ସରିନ, କୁମ୍ଭୀର ଗମ୍ଭୀର ହୋଇ କହିଲା—“ମୋତେ ଭାରି ଭୋକ । ମୁଁ କିଛି ନ ଖାଇଲେ ଆଉ ଯାଇ ପାରିବି ନାହିଁ । କିଛି ନ ମିଳିଲେ ବଲୁଆକୁ ମାରି ଖାଇବି ।”

ପକ୍ଷୀଟି ଦେଖାଣିଆ ଭାବରେ କହିଲା—“ହେ କୁମ୍ଭୀର ଭାଇ, ଆଜି ଆମ ସାଥିରେ ଚାଲବାଜି ଖେଳନାହିଁ । ମୁଁ ତ ସାଙ୍ଗେ ସାଙ୍ଗେ ଉଡ଼ିଯିବି । ମୋ ସାଙ୍ଗ ବଲୁଆ ତ ମହା ହୁସିଆର । ପଶୁ ଭିତରେ ସବୁଠୁ ଚାଲାକ । ବାହାରକୁ ଆସିଲା ବେଳେ ସେ ତାର ଜୀବନ ଆଲମାରିରେ ରଖି ଚାବି ପକାଇ ଆସିଛି । ତାର ଜୀବନ ନାହିଁ ।

ତେଣୁ ଯେତେ ଚେଷ୍ଟା କଲେ ବି ତାକୁ ମାରି ପାରିବୁ ନାହିଁ । ତେଣୁ ତାକୁ ଖାଇବାର ପ୍ରଶ୍ନ ଉଠୁ ନାହିଁ ।”

କୁମ୍ଭୀରଟି ଆଶ୍ଚର୍ଯ୍ୟ ହୋଇ ପଚାରିଲା—“ଏହା କଣ ସତ୍ୟ ?”

“ନିଶ୍ଚୟ ! ତୁ ଯଦି ଅବିଶ୍ୱାସ କରୁଛୁ, ତାକୁ ଆଘାତ କରୁନୁ । ଦେଖିବୁ ଖାଲି ଉଦ୍ୟମ କରିବୁ । ସବୁ ବ୍ୟର୍ଥ ହେବ । ଶେଷବେଳେ ପୁଣି ପରିଶ୍ରମ ବେଶ୍ ବାଧିବ ।” ବେପରୁଆ ଭାବରେ ତଡ଼ିର କହିଲା ।

“ଏତ ଆଶ୍ଚର୍ଯ୍ୟର କଥା । ମୁଁ ଆଗରୁ ଏମିତି ହୁଏ ବୋଲି ଜାଣି ନ ଥିଲି । ଯାହାହେଉ ମୋତେ କହି ମୋର ଅପକର୍ମରୁ ବଞ୍ଚେଇ ଦେଲୁ ।” କୁମ୍ଭୀରଟି କୃତଜ୍ଞ ହୋଇ କହିଲା । ତାପରେ ଆଉ ବାଟରେ ନ ଅଟକି ସିଧା କୂଳରେ ପହଞ୍ଚି ଗଲା । ନିରାପଦରେ ତଡ଼ିର ଆଉ ବାଲୁଆ ଆରପଟେ ପହଞ୍ଚି ଗଲେ ।

ପକ୍ଷୀଟି ପୁଣି ପଚାରିଲା—“ବର୍ତ୍ତମାନ ମୋ ବନ୍ଧୁତ୍ୱରେ ସନ୍ତୁଷ୍ଟ ତ ?”

ବାଲୁଆ କହିଲା—“ବନ୍ଧୁ, ନିଶ୍ଚୟ । ତୁ ମୋତେ ହସାଇଲୁ, କନ୍ଦାଇଲୁ, ଖୁଆଇଲୁ ଆଉ ଜୀବନକୁ ମୋର ରକ୍ଷା କଲୁ ! କିନ୍ତୁ ତୁ ମୋ ଠାରୁ ଅଧିକ ଚାଲାକ । ତୁ ମୋର ସମ୍ମାନନୀୟ ! ତୋ ସାଥିରେ ମୋର ବନ୍ଧୁତ୍ୱ ହୋଇ ପାରିବ ନାହିଁ । ମୁଁ ଯାଉଛି । ଯିବା ପୂର୍ବରୁ ମୁଁ ତୋତେ ପୁଣି ଥରେ ନମସ୍କାର କରୁଛି ।”

ଏତକ କହି ବାଲୁଆ ଡିଆଁ ମାରିଲା । ସେଇଦିନୁ ସେ ଆଉ ତଡ଼ିର ପକ୍ଷୀ ପାଖକୁ ଆସେ ନାହିଁ ।



# ଶାରୀ କିପରି ମୟୂରର ଗୋଡ଼ ପାଇଲା ।

ଶାରୀ ଗୋଟିଏ ସାଧାରଣ ପକ୍ଷୀ । ତାର ରଙ୍ଗ ଧୂସର । ଥଣ୍ଟଟି କଳା । ବହୁଦିନ ତଳେ ତାର ଗୋଡ଼ ଦୁଇଟି ବି ଖୁବ ଅସୁନ୍ଦର ଥିଲା । ଏବେକାର ମୟୂର ଗୋଡ଼ପରି । ସେଥିପାଇଁ ତା' ମନରେ ସବୁବେଳେ କଷ୍ଟ ।

ଶାରୀଟି ଦେଖେ—ମୟୂରର ରଙ୍ଗ ଚମତ୍କାର । ପୁଚ୍ଛ ତା'ର ଶୋଭାମୟ । ଗୋଡ଼ ଦୁଇଟି ବେଶ୍ ସୁସ୍ଥ । ସବଳ । ସୁନ୍ଦର । ସେଥିପାଇଁ ସେ ଠାଣିରେ ଚାଲେ । ଦେବତାଭଳି ନାଚେ ।

ସୁନ୍ଦର ହେବାକୁ ଶାରୀର ଖୁବ ଇଚ୍ଛା । ତେଣୁ ସେ ମୟୂରକୁ ଈର୍ଷା କରେ । ଭାବେ—ମୟୂରଠାରୁ ଯଦି ପୁଚ୍ଛ କି ଗୋଡ଼ ନେଇ ଆସନ୍ତା, ତାହାହେଲେ ସେ ବି ସୁନ୍ଦର ହୋଇଯାଆନ୍ତା । ପୁଣି ଭାବେ, ଏ କ'ଣ ସମ୍ଭବପର ?

ଦିନେ ସେ ମାଙ୍କଡ଼କୁ ଭେଟିଲା । ମାଙ୍କଡ଼ର ମୁହଁ, ହାତ ମଣିଷ ଭଳିଆ । ଅଭ୍ୟାସ ବି । ସେ ସେଇଠି ଚିନ୍ତା କଲା—ଏହା ଯଦି ମାଙ୍କଡ଼ ପକ୍ଷେ ସମ୍ଭବ, ମୟୂରର ପୁଚ୍ଛ କି ଗୋଡ଼ ଆଣିବାରେ ଅସମ୍ଭବ କ'ଣ ? ସେ ଭାବିଲା, ମାଙ୍କଡ଼ ସାଥିରେ ପରାମର୍ଶ କରିବ । ସେ ଯେମିତି ଉପାୟରେ ମଣିଷର ଅଂଶ ସବୁ ପାଇଛି, ସେଇ ବାଟ ସେ ଧରିବ ।

ଦିନେ ସକାଳେ ସେ ମାଙ୍କଡ଼ ପାଖରେ ହାଜର । ତାକୁ ଯଥାବିଧି ସମ୍ମାନ ଦେଇ, ନିଜର ଦୁଃଖ କହି ବସିଲା । ତା'ପରେ ତା'ର ଅସୁନ୍ଦର ଚେହେରା ପାଇଁ ସେ ବିଷର୍ଣ୍ଣ । କାନ୍ଦ କାନ୍ଦ ।

ଶାଗ୍ଭର ଦୁଃଖ ଦେଖି ମାଙ୍କଡ଼ଟି ବ୍ୟଥିତ । ତାକୁ ସେ ସାହାଯ୍ୟ କରିବାକୁ ଆଗ୍ରହାନ୍ୱିତ ।

ଶାଗ୍ଭଟି ଏଥର ନିର୍ଭୟ । ତେଣୁ ସେ ମାଙ୍କଡ଼କୁ ପଗ୍ଭରିଲା—"ତୁମେ ମଣିଷଠାରୁ ଭିନ୍ନ । ଅଥଚ ତମର ହାତ ମୁହଁ ଆଉ ଅଭ୍ୟାସ ମଣିଷ ପରି । ଏହା କେମିତି ହେଲା, ମୋତେ ଟିକଏ କହିବ କି ?"

ମାଙ୍କଡ଼ଟି କହିଲା—"ସୃଷ୍ଟିର ସ୍ରଷ୍ଟା ବ୍ରହ୍ମା । ମୁଁ ତାଙ୍କୁ ପୂଜା କଲି । ସେ ସନ୍ତୁଷ୍ଟ ହେଲେ । ତାଙ୍କ ଆଦେଶରେ ମୋର ଇଚ୍ଛା ପ୍ରକାଶ କଲି । ବ୍ରହ୍ମା ତଥାସ୍ତୁ କହିଲେ । ସେଇଥିନୁ ମୋର ହାତ ମୁହଁ ଅଭ୍ୟାସ ମଣିଷ ପରି ।"

ଏହା ଶୁଣି ଶାଗ୍ଭଟି କହିଲା—"ମାଙ୍କଡ଼ ଭାଇ । ତମେ ଭାରି ପରୋପକାରୀ । ମୁଁ କେଉଁଠି ଆଉ କେମିତି ବ୍ରହ୍ମାଙ୍କୁ ପାଇବି, ଟିକେ ବତେଇ ଦିଅ । ମୁଁ ମୋର ପ୍ରାଣ ଦେଇ ତାଙ୍କୁ ପୂଜା କରିବି । ଅନ୍ତତଃ ସନ୍ତୁଷ୍ଟ ହେବା ପର୍ଯ୍ୟନ୍ତ । ମୟୂରର ଗୋଡ଼ ଦୁଇଟି ମୋର ଏକାନ୍ତ ଆବଶ୍ୟକ ।"

ମାଙ୍କଡ଼ କହିଲା—"ଏ ତ ଅତି ସହଜ କଥା । ଆଗରେ ଯେଉଁ ମନ୍ଦିର ଦେଖୁଛୁ, ସେଠି ପୂଜକଟିଏ ଅଛି । ତା ପାଖକୁ ଯିବୁ । ସେ ସବୁ ବାଟ ବତାଇଦେବ ।"

ଶାଗ୍ଭର ତ ମନ ଲାଗିଛି । ସାଥୀ ସାଥୀ ସେ ମନ୍ଦିରକୁ ଗଲା । ସେଠି ପୂଜକକୁ ନିଜର ଦୁଃଖ ଗୋଟି ଗୋଟି କରି କହିଲା । କପରି ବ୍ରହ୍ମାଙ୍କୁ ପୂଜା କରିବି, ସେ କଥା ବତେଇ ଦେବାକୁ ନିବେଦନ କଲା ।

ପୂଜକ କହିଲେ—"ବ୍ରହ୍ମା ସ୍ୱର୍ଗରେ । ତାଙ୍କର ଦେଖା ମିଳିବା କାଠିକର ପାଠ । ବ୍ରହ୍ମାଙ୍କର ପୁଅ ନାରଦ । ମହାମୁନି । କିନ୍ତୁ ସେ ମଜା ଦେଖିବାକୁ ଭଲ ପାଆନ୍ତି । ସେଥିପାଇଁ ବେଳେ ବେଳେ ସେ ମର୍ତ୍ତ୍ୟକୁ ଆସନ୍ତି । ଏହି ମନ୍ଦିରରେ ମଙ୍ଗଳବାର ଦିନ ତାଙ୍କୁ ଭେଟିହେବ । ତାଙ୍କୁ ସନ୍ତୁଷ୍ଟ କରି ପାରିଲେ, ମନସ୍କାମନା ପୂର୍ଣ୍ଣ ହେବ ।

ଶାରୀର ତ ଆଗ୍ରହ ବଢ଼ୁଛି । ମଙ୍ଗଳବାର ସକାଳେ ସେ ମନ୍ଦିର ପାଖରେ ପହଞ୍ଚିଗଲା । ନାରଦ ମୁନିଙ୍କୁ ଅପେକ୍ଷା କରିଥାଏ । ସତକୁ ସତ, ନାରଦ ମୁନି ତାଙ୍କ ଢିଙ୍କି ବାହନରେ ଆସି ପହଞ୍ଚିଗଲେ ।

ନାରଦ ମୁନି ଦେଖିବାକୁ ଖୁବ ସୁନ୍ଦର । କନ୍ଦର୍ପ ପରି । ବାଳ ତାଙ୍କର କୁଞ୍ଚୁକୁଞ୍ଚିଆ । ପରିଧାନର ରଙ୍ଗ ଗେରୁଆ । ଆଖି ଦୁଇଟା ଜ୍ୟୋତିର୍ମୟ ।

ନାରଦ ମୁନିଙ୍କୁ ଦେଖି ଶାରୀଟି ମନରେ ଖୁବ ଆନନ୍ଦ । ହାତ ଯୋଡ଼ି ବିନୟ ଭାବରେ ତାଙ୍କୁ କହିଲା—"ହେ ମହାମୁନି ! ଆପଣଙ୍କର ବାପା ବ୍ରହ୍ମା । ସବୁ ଜୀବଙ୍କର ସ୍ରଷ୍ଟା । ସମସ୍ତଙ୍କୁ ସୁନ୍ଦର କରିଛନ୍ତି । ମୁଁ କେବଳ ଅସୁନ୍ଦର । ଆପଣ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କର ପୁତ୍ର । ଆପଣ ଚାହିଁଲେ ସଂସାର ବଦଳିଯିବ । ମୋତେ ଟିକିଏ ଦୟାକରନ୍ତୁ । ଆପଣ ଜାଣନ୍ତି, ମୟୂର ସୌନ୍ଦର୍ଯ୍ୟର ଭଣ୍ଡାର । ତା'ଠାରୁ ଗୋଟିଏ ଅଂଶ ଆଣିଲେ, ତାର କ୍ଷତି ହେବ ନାହିଁ । ତାର ସୌନ୍ଦର୍ଯ୍ୟ ବି କମିବ ନାହିଁ । କିନ୍ତୁ ସେଥିରୁ ଜାଣିଲ୍ବଏ ପାଇଲେ ମୁଁ ଟିକିଏ ସୁନ୍ଦର ହୋଇଯିବି ।"

ନାରଦ ମୁନି ସୌନ୍ଦର୍ଯ୍ୟ ପ୍ରିୟ । ଶାରୀର ଦୁଃଖ ଶୁଣି ତାଙ୍କର ହୃଦୟ ତରଳି ଗଲା । ସେ ଭାବିଲେ—ସବୁ ଜୀବ ଶିବ ସୁନ୍ଦର

ହୁଅନ୍ତୁ—ଏହାହିଁ ସ୍ରଷ୍ଟାର ଇଚ୍ଛା । ତା ସେ ଜାଣନ୍ତୁ । ବ୍ୟତିକ୍ରମ ହବାର କଥା ନୁହେଁ । କାରଣ ଅନ୍ୱେଷିତ । ଆପାତତଃ ଶାଗର ଅଭିଯୋଗ ଯଥାର୍ଥେ । କିନ୍ତୁ ମୟୂର ପୁଚ୍ଛ ଲମ୍ବା । ତା ବଡ଼ ଦେହକୁ ବେଶ୍ ମାନୁଛି । ଶାଗ ତ ଗ୍ରେଟ । ତାକୁ ମୟୂର ପୁଚ୍ଛ ଜମା ମାନିବ ନାହିଁ । କେବଳ ଗୋଡ଼ କଥା ବିଚାର୍ଯ୍ୟ । ଅବଶ୍ୟ ହଳଦିଆ ଗୋଡ଼ ଦୁଇଟା ମୟୂରକୁ ମାନୁ ନାହିଁ । ଶାଗ ଦେହକୁ ବେଶ୍ ମାନିବ ।

ଶାଗଟି ସେତିକିବେଳକୁ କହିଲା—"ମହାମୁନି, ମୋର କେବଳ ମୟୂରର ଗୋଡ଼ ପାଇଁ ଅନୁରୋଧ ।"

ମହାମୁନି କହିଲେ—"ଦେଖ୍, ମୁଁ ସୃଷ୍ଟିକର୍ତ୍ତା ନୁହେଁ । ଜୀବ ବା ତାର ନୂତନ ଅଙ୍ଗ ସୃଷ୍ଟି ମୋ ପକ୍ଷେ ଅସମ୍ଭବ । ମୁଁ କେବଳ ଭଙ୍ଗା ହାଡ଼ ଯୋଡ଼ିପାରେ । ଜଣଙ୍କର ଅଙ୍ଗ ଅନ୍ୟଜଣଙ୍କ ଅଙ୍ଗରେ ଲଗାଇପାରେ--କିନ୍ତୁ ତାହା ପୁଣି ଉଭୟଙ୍କ ରାଜିଖୁସିରେ । ମୁଁ ସ୍ୱଇଚ୍ଛାରେ କିଛି କରିପାରିବ ନାହିଁ । ତାହା ବ୍ରହ୍ମାଙ୍କ ହାତର କଥା । ଯଦି ତୁ ଆଜି ମୟୂର ରାଜି ହେବ, ମୁଁ ଦୁହିଁଙ୍କର ଗୋଡ଼ ବଦଳାଇ ଦେବି । ତୁ ଏ ବିଷୟରେ ମୟୂରକୁ ପଚାରିଛୁ ତ ?"

"ନାହିଁ, ମହାମୁନି । ପଚାରିବାକୁ ସାହସ ହେଲା ନାହିଁ ।" ଏହା ଥିଲା ଶାଗର ଉତ୍ତର ।

ନାରଦ ମୁନି କହିଲେ "ଠିକ୍ କଥା । ମୟୂର ଭାରି ଅବୁଝା । ସେ ରାଜି ହୋଇ ନ ପାରେ । ମୁଁ ତାକୁ ପଚାରେ ।"

ତା'ପରେ ପକ୍ଷୀର ଭାଷାରେ ନାରଦ ମୁନି ମୟୂରକୁ ଡାକିଲେ । ସେଦିନ ମେଘୁଆ ପାଗ । ମୟୂର ତାର ନାଚରେ ଭୋଳ । ମହାମୁନିଙ୍କ ଡାକରାକୁ କାନ ଦେଲା ନାହିଁ ।

ନାରଦ ମୁନି ଦେଖିଲେ—ସେ ଡାକିବା ସତ୍ତ୍ୱେ ମୟୂର ଆସିଲା ନାହିଁ । ମୟୂରଠାରୁ ଏ ପ୍ରକାର ବ୍ୟବହାର ଅପ୍ରତ୍ୟାଶିତ । ସେ ଏବେ ଟିକିଏ ଅପ୍ରତିଭ । କ୍ଷୁବ୍ଧ । ତେଣୁ ବଡ଼ ପାଟିରେ ଡ଼ାକି କହିଲେ—"ଏ ମୟୂର ! ମୁଁ ନାରଦ ମହାମୁନି । ବ୍ରହ୍ମାଙ୍କର ପୁତ୍ର । ମୋ ଡ଼ାକରାରେ ତୁ ଆସିବାକୁ ବାଧ୍ୟ ।"

ମୟୂର ତା ନାଚରେ ତନ୍ମୟ । ନାରଦ ମହାମୁନିଙ୍କ ଡାକ ସେ ଶୁଣିଲା ସିନା, କିନ୍ତୁ ତାଙ୍କ ଆଡ଼କୁ ଅନାଇବାକୁ ତାର ବେଳ ନଥିଲା । ସେ ନାଚ ବନ୍ଦ କରି ଆସିଲା ବି ନାହିଁ ।

ମହାମୁନି ରାଗିଗଲେ । କହିଲେ—"ରହ, ତତେ ମୁଁ ପାନେ ଦେଉଛି । ତୋର ଗୋଡ଼ ଶାପ ନେବ, ଆଜି ତୁ ପାଇବୁ ଶାପର ଗୋଡ଼ ।"

ତଳେଇ କପାଳକୁ ଶିକା ଛିଣ୍ଡିଲା । ଶାପର ଭାଗ୍ୟ ଖୋଲିଗଲା ।

କିଛି ସମୟ ପରେ ନାରଦ ମୁନିଙ୍କ ରାଗ କମିଗଲା । ସେ ଭାବିଲେ —ତରବରିଆ ହୋଇ କୌଣସି କାମ କରିଦେବା ତାଙ୍କ ପକ୍ଷେ ଉଚିତ ନୁହେଁ । ବହୁ ଚିନ୍ତା ଆଉ ଅନୁଧ୍ୟାନ ପରେ ଜୀବର ସୃଷ୍ଟି ହୋଇଛି । ତାର ଅଙ୍ଗ ପ୍ରତ୍ୟଙ୍ଗ ମଧ୍ୟ । ମୟୂରର ବ୍ୟବହାର ଅସନ୍ତୋଷଜନକ । ଅପରାଧ ପୂର୍ଣ୍ଣ । ଅକ୍ଷମଣୀୟ । ଏଥିପାଇଁ ତା'ର ଗୋଡ଼ ବଦଳାଇବାଟା ଉଚିତ ହେବନାହିଁ । ଅନ୍ତିମରେ ବ୍ରହ୍ମାଙ୍କର ମତାମତ ନେବା ଉଚିତ । ସେ ଶାପକୁ କହିଲେ— "ମୁଁ, ଆର ମଙ୍ଗଳବାର ଦିନ ଆସିବି । ତୋ ପାଇଁ କିଛି ଗୋଟାଏ ବ୍ୟବସ୍ଥା କରିବି !"

ମୟୂରର ବ୍ୟବହାରରେ ମହାମୁନି ଅସନ୍ତୁଷ୍ଟ । ଅପମାନିତ । ସେ ଭାବୁଥାଆନ୍ତି, ଯଦି ମୟୂରକୁ ଉତ୍ତମ ଶିକ୍ଷା ଦିଆ ନ ହୁଏ, ତାହାହେଲେ ଭବିଷ୍ୟତରେ ଜୀବଜଗତରେ ତାଙ୍କୁ କେହି ମାନିବେ ନାହିଁ । ସେଥିପାଇଁ ମୟୂରର ପାଦ ଶାଖକୁ ଦେବାକୁ ସେ ମନେ ମନେ ସ୍ଥିର କଲେ !

ନାରଦ ସ୍ୱର୍ଗରେ ପହଞ୍ଚି ଦେଖିଲେ ବ୍ରହ୍ମା ନିଦ୍ରିତ । ତାଙ୍କ ମା' ନାରଦମୁନିଙ୍କୁ ଶୋଇବା ଘରକୁ ଯିବାକୁ ବାରଣ କରି କହିଲେ—"ବ୍ରହ୍ମା ଶୋଇଛନ୍ତି । ଅପ୍ରତ୍ୟାଶିତ ଜରୁରି କାମ ଛଡ଼ା ସେ ଉଠିବେ ନାହିଁ ।"

ନାରଦ ମହାମୁନି ଏଥିରେ ବ୍ୟତିବ୍ୟସ୍ତ । ବ୍ରହ୍ମାଙ୍କର ବିନା ଆଦେଶରେ ମୟୂରର ପାଦ ନେଇ ହେବ ନାହିଁ । ତେଣୁ ପ୍ରତିଶୋଧ ନେବାଟା ଅସମ୍ଭବ । କେବଳ ତାଙ୍କ ମା' ଦୟା କଲେ, ତାଙ୍କର ଇଜ୍ଜତ ରହିବ । ତେଣୁ ସେ ସବୁ କଥା ଗୋଟି ଗୋଟି କରି ସାବିତ୍ରୀଙ୍କୁ କହିଲେ । ତା'ପରେ କହିଲେ "ମା, ମୁଁ ବ୍ରହ୍ମାଙ୍କର ପୁତ୍ର । ମୋର ମାନ ସମ୍ମାନ ଅଛି । ମୋର ମାନ ନ ରହିଲେ ବ୍ରହ୍ମାଙ୍କ ସମ୍ମାନରେ ମଧ୍ୟ ଆଞ୍ଚ ଆସିବ । ତମେ ନ ବୁଝିଲେ ଆମର ମାନ, ଇଜ୍ଜତ ଓ ମହତ ଧୂଳିସାତ୍ ହୋଇଯିବ । ଦେବତାମାନେ ହସିବେ । ଲୋକେ ଦେୟୁଜ୍ଞାନ କରିବେ । କଥାଟା ବାପାଙ୍କ କାନରେ ପକାଇବାକୁ ହେବ ।"

ପୁଅ ପ୍ରତି ମା'ର ଶ୍ରଦ୍ଧା ଅସୀମ । ନାରଦ ମୁନିଙ୍କୁ ଅପମାନ ସାବିତ୍ରୀଙ୍କୁ ବାଧିଲା । ସେ କହିଲେ "ପୁଅରେ ଚିନ୍ତା କର ନାହିଁ । ବ୍ରହ୍ମା ବେଳେ ବେଳେ ନିଦ୍ରାବସ୍ଥାରେ ମୋ ସାଥିରେ କଥାବାର୍ତ୍ତା ହୁଅନ୍ତି । ମୁଁ ବି ତାଙ୍କୁ ଆପତ୍ତି ଅଭିଯୋଗ କରେ । ବର୍ତ୍ତମାନ ଯାଇ

ଡୋ କଥା କହିବ । ମୁଁ ଜାଣେ, ଭୁଡ କଳ ଲଗାଇବାରେ ଓସ୍ତାଦ୍ । ଅସମ୍ମାନ ପରିସ୍ଥିତିରେ ପଡ଼ୁ । ବାପା ଡଡେ ସବୁଠୁ ଉଦ୍ଧାର କରିଛନ୍ତି । ଏଥର ନିଶ୍ଚୟ ସାହାଯ୍ୟ କରିବେ ।"

ସାବିତ୍ରୀ ଯାଇ ବ୍ରହ୍ମାଙ୍କ ପାଖରେ ବସି କହଲେ—"ନାରଦ ଯେତେହେଲେ ଆମ ପୁଅ । ତା'ର ସମ୍ମାନ ଆମର ସମ୍ମାନ । ମୟୂରକୁ ସେ ଡାକିଲ । ମୟୂର ହେସ୍ବିକ୍ଲାନ କର ଶୁଣିଲ ନାହିଁ । ନାରଦ ରଗିଗଲେ । ସେ ଶାଗକୁ ମୟୂରର ଗୋଡ଼ ଦେବ ବୋଲି ଜବାବ ଦେଇଛି । ତା' କଥା ନ ବୁଝିଲେ, ତାର ସମ୍ମାନ ଯିବ । ଆପଣଙ୍କ ଅନୁମତି ହେଲେ ଶାଗ ମୟୂର ଗୋଡ ଆଉ ମୟୂର ଶାଗର ଗୋଡ଼ ପାଇବେ ।"

ସାବିତ୍ରୀଙ୍କର ବାରମ୍ବାର ଅନୁରୋଧରେ ବ୍ରହ୍ମା ବିଚଳିତ । ଶେଷକୁ କର ଲେଉଟେଇଲାବେଳେ ଆସ୍ତେ କରି ହଁ ମାରିଲେ ।

ପରଦିନ ସକାଳ । ସାବିତ୍ରୀ ପୁଅକୁ ଡାକି ବାପାଙ୍କର ସମ୍ମତି କଥା ଜଣାଇଦେଲେ । ମହାମୁନି ଭାରି ଖୁସି ।

ମଙ୍ଗଳବାର ଆସିଲା । ତିର୍କିଟି ଚଢ଼ି ନାରଦ ମୁନି ମର୍ତ୍ତ୍ୟକୁ ଆସି ପ୍ରଥମେ ଦେଖିଲେ—ମୟୂର ଗୋଡ଼ ଶାଗଠାରେ ଲାଗିଛି । ସେ ମହା ଖୁସି । ମୟୂର ବିଚରା ଶାଗର ଗୋଡ଼ ପାଇ ଆଖିରୁ ଲୁହ ଗଡ଼ାଉଛି । ନାରଦ ମୁନିଙ୍କ ପାଖକୁ ମୟୁର ଆସିଲା । ଖୁବ୍ କାନ୍ଦିଲା । ଘଣ୍ଟାଘଣ୍ଟା କାନ୍ଦଣା ତାର ।

ନାରଦଙ୍କ ମନ ମଉଳିଲା । ପର ଦୁଃଖ ସେ ସହିପାରନ୍ତି ନାହିଁ । ତା' ଛଡ଼ା ମୟୂର ତାଙ୍କ ପାଖକୁ ଆସିଲାଣି । ତା'ର ଭୁଲ ପାଇଁ ଶୋଚନା କରୁଛି । ମୟୂରକୁ ସାନ୍ତ୍ୱନା ଦେଲେ । ତା'ର ଲୁହ ଏଥର 'ମୁକ୍ତା' ହେବ ବୋଲି ସେ ବର ଦେଲେ ।

ମୟୂର ମନରେ ଆନନ୍ଦ । ମୟୂରର ଆଗ ଦୁଃଖ ଆଉ ନାହିଁ । ସେ ନାରଦଙ୍କ ପାଖରୁ ଯାଇ ପଦାରେ ବୁଲିଲଣି । କିନ୍ତୁ ଶାଗ୍ଯ ପ୍ରତି ତା'ର ଈର୍ଷା ବଢ଼ି ଯାଇଛି । ଶାଗ୍ଯ ବ ସୁନ୍ଦର ଗୋଡ଼ ପାଇଥିବାରୁ ଦେଖେଇ ହେଉଛି । ଉଭୟଙ୍କର ଦେଖା ହୋଇଗଲା ସେହି ମନ୍ଦିର ପ୍ରାଙ୍ଗଣରେ । ଉଭୟେ ଉଭୟଙ୍କୁ ଖୁମ୍ପିବାକୁ ଆରମ୍ଭ କରିଦେଲେ । ଏହା ନାରଦ ମହାମୁନିଙ୍କ ନଜରରେ ପଡ଼ିଗଲା ।

ନାରଦ ମହାମୁନି ମହା ଖୁସି । ଏଥର ମଜ୍ଜା ବେଶ୍ ବଢ଼ିଆ । ଶାଗ୍ଯ ଆଉ ମୟୂରର କଳି । ସେ ପୁଣି ଚରଣ ପାଇଁ ।

ଆଉ ଅପେକ୍ଷା ନ କରି ସେ ଢିଙ୍କିରେ ଚଢ଼ିଲେ । ଢୁଙ୍କୁ ଢୁଙ୍କୁ ଢିଙ୍କି ତାଙ୍କୁ ସ୍ୱର୍ଗକୁ ନେଇ ଯାଉଥିଲା ।

—ଃ✻ଃ—

# ସିଂହ ଓ ବଗ

ଏକଦା ହିମବନ୍ତ ମୂଲକରେ ବୋଧିସତ୍ତ୍ୱ ଧଳା ବଗଟିଏ ହୋଇ ଜନ୍ମଗ୍ରହଣ କରିଥିଲେ । ସେହି ସମୟରେ ବ୍ରହ୍ମଦତ୍ତ କାଶୀର ଶାସନକର୍ତ୍ତା । ଯୋଗକୁ ମାଂସ ଖାଇଲାବେଳେ ହାଡ଼ଟିଏ ସେଠାରେ ରହୁଥିବା ଗୋଟିଏ ସିଂହର ତଣ୍ଟିରେ ଲାଗିଗଲା । ତଣ୍ଟି ଫୁଲିଗଲା । ସେ ଆଉ ଖାଦ୍ୟ ଖାଇପାରିଲା ନାହିଁ । ତା'ର କଷ୍ଟ ବେଳକୁବେଳ ବଢ଼ିବାକୁ ଲାଗିଲା । !

ଗଛ ଉପରେ ବସି ବଗଟିଏ ଏସବୁ ଦେଖୁଥିଲା । ସେ ସିଂହକୁ ପଚାରିଲା—“ବନ୍ଧୁ, କ'ଣ ପାଇଁ ଏ କଷ୍ଟ ?” ସିଂହଟି

ତାକୁ ସବୁକଥା କହିଲା । "ହାଡ଼ଟି ମୁଁ ବାହାର କରି ଆଣନ୍ତି କିନ୍ତୁ ତମ ପାଟିରେ ମୁଁ ମୁଣ୍ଡ ପୁରାଇଲେ ତୁମେ ମୋତେ ଖାଇଦେବ । ଏଇଟା ମୋର ଭୟ ।" ବଗ କହିଲା ।

"ବନ୍ଧୁ ମତେ ଭୟ କରନାହିଁ । ମୁଁ ତମକୁ ଖାଇବ ନାହିଁ । ମୋର ଜୀବନ ରଖ ।" ସିଂହର ଅନୁରୋଧ, ବଗ କହିଲା—"ଠିକ୍ ଅଛି ।" ସିଂହକୁ ବାଁ ପଟିଆ ସେ ଶୁଆଇଦେଲା । ମନକୁମନ ଭାବିଲା "କିଏ ଜାଣେ, ଏ କ'ଣ କରିବ ?" ସିଂହ ଯେମିତି ଆଉ ପାଟି ବନ୍ଦ କରିଂ ପାରିବ ନାହିଁ, ସେଥିପାଇଁ ସେ ଗୋଟିଏ କାଠି ସିଧାକରି ସିଂହର ଦୁଇପାଟି ମଝିରେ ଠିଆ କରି ରଖିଲା । ତା'ପରେ ତାର ମୁଣ୍ଡ ସିଂହ ପାଟିରେ ପୁରାଇ ଥଣ୍ଟରେ ହାଡ଼ର ଗୋଟିଏ ମୁଣ୍ଡକୁ ଆଘାତ ଦେଲା । ଫଳରେ ହାଡ଼ଟି ଖସି ପଡ଼ିଲା । ସାଙ୍ଗେ ସାଙ୍ଗେ ସେ ତାର ଥଣ୍ଟରେ ଦୁଇପାଟି ମଝିରେ ଠିଆକରି ରଖିଥିବା କାଠକୁ ଆଘାତ କଲା । ଫଳରେ ସେ ବି ଖସି ପଡ଼ିଗଲା । ବଗଟି ଥଣ୍ଟକୁ ସିଂହ ପାଟିରୁ ବାହାର କରି ଆଣି ଗଛ ଡାଳରେ ପୁଣି ବସିଗଲା ।

ସିଂହଟି ତା'ପରେ ସୁସ୍ଥ ହୋଇଗଲା । ଦିନେ ସିଂହଟି ଗୋଟିଏ ମଇଁଷି ମାରି ଖାଉଥାଏ । ତା ଉପରେ ଥିବା ଡାଳରେ ବଗଟି ବସି ପଚାରିଲା—"ହେ ପଶୁରାଜ ! ମୋର ସାଧ୍ୟାତୀତ ପରିଶ୍ରମ କରି ତମର ସେବା କଲି । ମୁଁ ତା ବଦଳରେ କ'ଣ ପାଇଲି ?" ସିଂହ ତାର ଉତ୍ତରରେ କହିଲା—"ରକ୍ତ ମୋର ଆଧାର । ମୁଁ ଶିକାର କରି ବଂଚେ । ମୋ ଦାନ୍ତ ମଧ୍ୟରୁ ତୋ ମଥା ରକ୍ଷା ପାଇ ଗଲା । ଆଉ ତୁ ଏବେ ବି ବଞ୍ଚିଛୁ । ଏହା କ'ଣ ତୋର ଭାଗ୍ୟ ନୁହେଁ ?"

ଉତ୍ତରରେ ବଗ କହିଲା—"ତୁମେ ଜାହାର କିଛି ମଙ୍ଗଳ କରନାହଁ । ଯାହା କରିବାର କଥା, ତା ବି କରୁନାହଁ । ତୁମଠାରେ କୃତଜ୍ଞତା ବୋଲି କିଛି ନାହିଁ । ତମର ସେବା ନିରର୍ଥକ । ଭଲ କାମ କଲେ ମଧ୍ୟ ତମର ବନ୍ଧୁତ୍ୱ ବି ମିଳିବ ନାହିଁ । ତେଣୁ ତମକୁ ଈର୍ଷା କରିବା ବା ଗାଳିଦେବା ଉଚିତ ନୁହେଁ । ବରଂ ତମ ପାଖରୁ ଚୁପ୍ ହୋଇ ଖସି ଆସିବା ଉଚିତ ।"

ଏତକ କହି ବଗଟି ଉଡ଼ିଗଲା ।

ଭଗବାନ ଗୌତମ ବୁଦ୍ଧ ଏଇ ଗପଟି କହି ସାରିବା ପରେ ଶେଷକୁ ଯୋଗକଲେ—"ସେ ସମୟରେ ସିଂହ ହେଉଛି ବିଶ୍ୱାସ-ଘାତକ ଦେବଦତ୍ତ ଏବଂ ଧଳା ବଗଟି ମୁଁ ନିଜେ ।"



# ପୃଥିବୀର ଲୋକକଥା




**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**

**ଗୋ ଦିଘାଳ, ଜି. - ପୁରୀ**